


ଧଉଳି ବୁକ୍ସ
୮୧୮/୨୫୦୨, ଗୋବିନ୍ଦେଶ୍ୱର ରୋଡ଼, ଓଲ୍ଡ ଟାଉନ
ଭୁବନେଶ୍ୱର, ଓଡ଼ିଶା ୭୫୧୦୦୨

# ଅନାମ ଅଣଚାଶ

(କବିତା ସଂକଳନ)

ଲେଖକ: ମନୁ ଦାଶ
ପ୍ରଥମ ପ୍ରକାଶନ: ୨୦୨୦
ପ୍ରଚ୍ଛଦ: ଜଗଦୀଶ ସ୍ୱାମୀନାଥନ୍
ଅକ୍ଷର ସଂଯୋଜନା: କ୍ରିଏଟର୍ସ ଏବୋଡ୍, ଭୁବନେଶ୍ୱର, ଓଡ଼ିଶା
ମୁଦ୍ରଣ: ଥମ୍‌ସନ୍ ପ୍ରେସ୍ (ଇଣ୍ଡିଆ) ଲିମିଟେଡ୍, ନୂଆଦିଲ୍ଲୀ
ଆଇଏସ୍‌ବିଏନ୍: ୯୭୮୯୩୮୯୩୮୨୩୪୧
ମୂଲ୍ୟ: ₹୧୯୫/-

Dhauli Books
(an imprint of Dhauli Review Trust)
Plot 818/2502, Gobindeswar Road, Old Town
Bhubaneswar 751002, Odisha, India
email: contactdhaulibooks@gmail.com

## Anam Anachasha

(collection of poems)

Author: Manu Dash
First published in 2020
Cover: Jagdish Swaminathan
Typeset by Creators Abode, Bhubaneswar, Odisha
Printed and bound by Thomson Press (India) Ltd., New Delhi
ISBN: 9789389382341
Price: ₹195/-

The job of a citizen is to keep his mouth open.

- *Gunter Grass*

ମୋର ପ୍ରଥମ କାବ୍ୟଗୁରୁ କବି କୁମାର ମହାନ୍ତି ଓ
କବି ଦୀନକୃଷ୍ଣ ଦାସଙ୍କୁ

– ଶ୍ରଦ୍ଧା ଓ ପ୍ରଣାମୀ

# କିଛି କହିବାର ଅଛି

୧୯୭୪ ମସିହା ଶେଷ ଆଡ଼କୁ କୁମାର ମହାନ୍ତିଙ୍କ 'ଅନାମ କାବ୍ୟ ଆନ୍ଦୋଳନ' ପ୍ରତି ଆକୃଷ୍ଟ ହୋଇ ମୁଁ ତାଙ୍କ ପାଖରେ ପହଞ୍ଚିଲା ବେଳକୁ ମୋର ବୟସ ଥିଲା ଅଠର। ଅନାମ କାବ୍ୟ ଆନ୍ଦୋଳନ'ରେ ସେତେବେଳେ ମୋତେ ସର୍ବ କନିଷ୍ଠ କବି ଭାବେ ଗଣା ହେଲା ଯେବେ ୧୯୭୫ ଜାନୁଆରୀ ସଂଖ୍ୟା 'ଆସନ୍ତାକାଲି'ରେ ମୋର ପ୍ରଥମ ଓ ଅନାମ କବିତା ବାହାରିଲା ଯାହାର ପ୍ରଥମ ଧାଡ଼ି ଥିଲା: 'ଥୟଧର ଟିକେ ଥୟଧର'।

ସେତେବେଳେ ଭାରତରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ରାଜତ୍ୱ ଓ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀମତୀ ନନ୍ଦିନୀ ଶତପଥି। ଯଦିଓ ସେଇବର୍ଷ ଜୁନ୍ ମାସରେ ଜରୁରୀକାଳୀନ ପରିସ୍ଥିତି ଜାରି ହେଲା, ମାତ୍ର ତା'ର କିଛି ମାସ ପୂର୍ବରୁ ସାରା ଭାରତର ରାଜନୈତିକ ଓ ସାମାଜିକ ଅବସ୍ଥା ଥିଲା ବେଶ୍ ଉତ୍ତେଜନାପୂର୍ଣ୍ଣ। ଓଡ଼ିଶାର ରାଜନୈତିକ ବାତାରଣ ବି ଥିଲା ଅବିଶ୍ୱାସ, ଦମନଲୀଳା, ପ୍ରତାରଣା ଏବଂ ଅହଂମିକାର ଗୋଟେ କକ୍‌ଟେଲ୍।

ଦୁଇ ଦଶନ୍ଧିରୁ ଅଧିକ କାଳ କୁମାର ମହାନ୍ତିଙ୍କ ସହ ମୋର ପ୍ରତ୍ୟକ୍ଷ ସମ୍ପର୍କ ରହିଥିଲା, ତାଙ୍କ ଦେହାବସାନ ୧୯୯୬ ମସିହାରେ ହେବା ପର୍ଯ୍ୟନ୍ତ। ଦୁଇ ଦଶନ୍ଧି କାଳ ଭିତରେ 'ଅନାମ କାବ୍ୟ ଆନ୍ଦୋଳନ'ର ଅନେକ ଘଟଣାକ୍ରମର ସାକ୍ଷୀ ହେବାର ସୁଯୋଗ ମଧ୍ୟ ମିଳିଛି। ସମ୍ଭବତଃ କୁମାର ମହାନ୍ତିଙ୍କ

ପ୍ରୟାଣ ପରେ ବି ଅନାମ କବିତା ଲେଖିବାର ପରମ୍ପରାକୁ ଉଜ୍ଜିବିତ ରଖିବାରେ ମୁଁ ଯଥୋପରନାସ୍ତି ପ୍ରୟାସ ଜାରି ରଖିଛି।

୪୫ବର୍ଷ ଭିତରେ ବିଭିନ୍ନ ପତ୍ର ପତ୍ରିକାରେ ଅନେକ ଅନାମ କବିତା ଲେଖିଥିଲେ ବି ବିଭିନ୍ନ ସ୍ଥାନକୁ ଚାକିରୀ ପାଇଁ ସ୍ଥାନାନ୍ତରିତ ହେବା ଓ ଜନୈକ ବନ୍ଧୁ ଅନାମ କବିତାମାନଙ୍କ ପାଣ୍ଡୁଲିପିଟି ହଜାଇ ଦେବା ଫଳରେ ଲିଖିତ ସମସ୍ତ ଅନାମ କବିତା ଏଥିରେ ସ୍ଥାନିତ ହୋଇପାରୁ ନାହିଁ। ତେବେ ସମସ୍ତ 'ଅନାମ କବିତା' ଉଦ୍ଧାର କରିବା ପ୍ରକ୍ରୀୟା ଜାରି ରହିଛି।

'ଅନାମ କାବ୍ୟ ଆନ୍ଦୋଳନ'ର ସୃଷ୍ଟି ଓ ଏହାର ଉଦ୍ଦେଶ୍ୟକୁ ନେଇ ମୁଁ ଏଠାରେ ବିଶେଷ କିଛି ଉଲ୍ଲେଖ କରୁନାହିଁ। ସମାଲୋଚକମାନେ ଏହି ଆନ୍ଦୋଳନର ବସ୍ତୁନିଷ୍ଠ ଦିଗ ସମ୍ପର୍କରେ ସବିଶେଷ ଆଲୋଚନା କରିବେ ବୋଲି ମୋର ବିଶ୍ୱାସ।

କୁମାର ମହାନ୍ତିଙ୍କ ପ୍ରୟାଣର ୨୫ ବର୍ଷ ଏବଂ 'ଅନାମ କାବ୍ୟ ଆନ୍ଦୋଳନ'ର ୫୦ ବର୍ଷ ଭିତରେ ଓଡ଼ିଆ ସାହିତ୍ୟର ଦିଗ୍‌ଗଜ ସମାଲୋଚକମାନଙ୍କୁ ଏହି ନିଆରା କାବ୍ୟ ଆନ୍ଦୋଳନ ଦୃଷ୍ଟି ଆକର୍ଷଣରେ ବିଫଳ ରହିବାର କାରଣର ରହସ୍ୟ ବି ଉଦ୍‌ଘାଟିତ ହେବ ବୋଲି ମୋର ବିଶ୍ୱାସ ଅଛି।

'ଅନାମ କାବ୍ୟ ଆନ୍ଦେଳାନ'ର ମୁଖ୍ୟ ପୁରୋଧା କୁମାର ମହାନ୍ତିଙ୍କ ସମସାମୟିକ କବିତା ଓ ଏଷ୍ଟାବ୍ଲିସ୍‌ମେଣ୍ଟରେ ନିଜ ଚଉକିକୁ ଜାବୁଡ଼ି ଧରିଥିବା ଗଜପତିମାନଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ ପାଇଁ ବୋଧେ ତାଙ୍କୁ ଏ ସଜା ମିଳିଥିଲା !

କୁମାର ମହାନ୍ତିଙ୍କ ଘର ପୁରୀ ସହରରେ। ଯେଉଁ ଶ୍ରୀକ୍ଷେତ୍ରରେ ଏକଦା କବି ଦୀନକୃଷ୍ଣ ଦାସ ତତ୍‌କାଳୀନ ଗଜପତିଙ୍କୁ ଯେଉଁ ଉଦାତ୍ତ ବାଣୀ ଶୁଣାଇଥିଲେ, ତାହା ଏବେ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି:

କବି ଯା' କରେ ମୂର୍ଖକୁ ସ୍ତୁତି
ସେଥିରୁ ନାହିଁ ବଡ଼ ବିପତ୍ତି
ସେଥିକି ପ୍ରତି ଛାତରେ କାତି
ମାରିବା ଭଲ ହେ...

ଏ ଦୃଷ୍ଟିରୁ ଦେଖିଲେ ଦୀନକୃଷ୍ଣଙ୍କର ଏକ ସମର୍ଥ ଉତ୍ତରଦାୟଦ ଥିଲେ ସେ। ଯଦିଓ 'ଅନାମ କାବ୍ୟ ଆନ୍ଦୋଳନ'କୁ ପାଠକ ଓ ଗବେଷକଙ୍କଠାରୁ କିଛି ସମାଲୋଚକ ଦୂରେଇ ରଖିବାକୁ ଆପ୍ରାଣ ଉଦ୍ୟମ କରିଥିଲେ, ମାତ୍ର ମୋର ଦୃଢ଼ ଧାରଣା ଥିଲା ଯେ, ସତ୍ୟକୁ କେବେ କବର ଦିଆଯାଇ ପାରିବନାହିଁ।

୧୬୧୬ରେ ସେକ୍ସପିଅରଙ୍କ ମୃତ୍ୟୁର ୭ବର୍ଷ ପରେ 'ଫାଷ୍ଟ ଫୋଲିଓ' ସଂସ୍କରଣ ପ୍ରକାଶ ପାଇଥିଲା ଯେଉଁଥିରେ ତାଙ୍କ ବନ୍ଧୁ ଓ ସାଥୀ ଜିନ୍ ହେମିଙ୍ଗେ ଓ ହେନ୍ରୀ କୋଣ୍ଡେଲ୍ଙ୍କ ସହଯୋଗ ରହିଥିଲା। ଠିକ୍ ସେଇପରି ଫ୍ରାନ୍ଜ କାଫ୍କାଙ୍କ କୃତି ସବୁକୁ ତାଙ୍କ ମୃତ୍ୟୁ ପରେ ପାଠକମାନଙ୍କ ପାଖରେ ପହଁଚାଇବାରେ ତାଙ୍କ ଘନିଷ୍ଠ ବନ୍ଧୁ ମାକ୍ସ ବ୍ରଡ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ।

ଏ ସବୁ କହିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି: Never be afraid to raise your voice for honesty and truth and compassion against injustice and lying and greed. If people all over the world...would do this, it would change the earth. (William Faulkner)

ଅନାମଙ୍କ ଶୀର୍ଷକହୀନ କବିତା ପରି, ଆର୍ଜେଣ୍ଟିନାର କବି ରବର୍ଟୋ ଜ୍ୱାରୋଜ (Roberto Juarroz) (୧୯୨୫-୯୫) ମଧ୍ୟ ଲେଖିଥିବା ପନ୍ଦରଟି କବିତା ବହିରେ ଥିବା କବିତାମାନଙ୍କର ଶୀର୍ଷକ ନଥିଲା। ଜଣେ ସମ୍ଭ୍ରାନ୍ତ କବି ଭାବେ ତାଙ୍କ କବିତାର ଆବେଦନଥିଲା ସ୍ୱତନ୍ତ୍ର ଓ ସର୍ବଗ୍ରାହୀ।

ସମକାଳର ବ୍ୟବସ୍ଥା ପ୍ରତି ସାଂସ୍କୃତିକ ପ୍ରତିବାଦ, ଜଗନ୍ନାଥ ଚେତନା ପ୍ରତି ପୁନଃ ଆସ୍ଥା ଓ ସମର୍ପଣ, ନିଜ ମାଟିର ଚେର ଅନ୍ୱେଷଣ, ଗାଉଁଲି ଲୋକ ସହ କବିତାର ସମ୍ପର୍କ ପ୍ରତିଷ୍ଠା, ପାଶ୍ଚାତ୍ୟ ସଭ୍ୟତାର ହନୁକରଣ ପ୍ରତି ଅନାସ୍ଥା, ତଥାକଥିତ ଆଧୁନିକ କବିମାନଙ୍କ ଭିତରେ ଆତ୍ମଚିନ୍ତନ ଓ ମାନସମନ୍ଥନ, କବିତାରେ ସାଙ୍ଗିତିକତା ଓ ମୁକ୍ତଛନ୍ଦ ପ୍ରତି ବିଶ୍ୱାସର ପୁନଃ ପ୍ରତିଷ୍ଠା ଆଦି 'ଅନାମ କାବ୍ୟ ଆନ୍ଦୋଳନ'କୁ କରିଥିଲା ମୁଖର। ସେ ସମୟକୁ ଜିଇଁବାର ସୁଯୋଗ ଏ ଅଧମକୁ ମିଳିଥିଲା ଖୁବ୍ ନିକଟରୁ।

'ଅନାମ ଅଣଚାଶ' କବିତା ସଂକଳନଟି ପରିମାଣ ଓ ଆକାର ଦୃଷ୍ଟିରୁ ପତଳା ମନେ ହେଇପାରେ, ମାତ୍ର ଏଇ କବିତାମାନଙ୍କରେ କବିତା, ମାଟି ଓ ସଂସ୍କୃତି ପ୍ରତି ଥିବା ସମୟବୋଧର ରକ୍ତକଣିକା ଧମନୀରେ ପ୍ରବାହିତ ହେଉଥିବା ବିଷୟ ପାଠକମାନେ ଠଉରାଇ ପାରିବେ।

କବିତାଗୁଡ଼ିକ ପାଠକର ହୃଦୟକୁ ଛୁଇଁ ପାରିଲେ ନିଜକୁ କୃତାର୍ଥ ମଣିବି। କିମାଧିକମ୍!

**ମନୁ ଦାଶ**

୧ ସେପ୍ଟେମ୍ବେର ୨୦୨୦

## ସୂଚୀପତ୍ର

●

ମୁଁ କାହାକୁ କରିବି ମକର
ପୁରୁବୁ ପଶ୍ଚିମ
ଉତ୍ତରୁ ଦକ୍ଷିଣ
ଘୁରି ଘୁରି ମୁଁ ଯେ ଘାଇଲା ହେଲିଣି
ମୁଣ୍ଡ ଖାଇଲାଣି ଚକ୍‌କର ।
ମୁଁ କାହାକୁ କରିବି ମକର ?
ମୁଁ କାହାକୁ କରିବି ମକର ?

ଦୁନିଆଟା ସାରା ହାଉଯାଉ ଲୋକ
ମଣିଷ ମିଳୁଛି କାହିଁ ?
ନିଜ ତଅଁରରେ ଆକ୍‌ତାମାକ୍‌ତା
(ଆନେ) ଖୋଜିବାକୁ ବେଳ ନାହିଁ ।
ମିତ ବୋଲି ଯା'ରେ ଡାକିଲି ପ୍ରେମରେ
ସିଏ ତ ଦେଲାଣି ଟକ୍କର !
ମୁଁ କାହାକୁ କରିବି ମକର ?

ସୂରୁଯ ଡୁବିଲେ ପଣ୍ଡୁ କଉରବ
ଭୁଲୁଥିଲେ ରୋଷ ରାଗ,
ଦୁନିଆରେ ଆଜି ରୀତି ତ ଓଲଟା
ରକତ ମାଗଇ ଭାଗ,
ରଚିର ସହରେ ଦଳ ଦଳ ଏବେ
ମୁଖା ପିନ୍ଧିଥିବା ଜୋକର !
ମୁଁ କାହାକୁ କରିବି ମକର ?

ନିଜ ଶବ ବୋହି ମଣିଷ ଜାତିଟା
ଖୋଜୁଛି ସରଗ ସିଢ଼ି,
ଅଲାଜୁକ କାନ୍ଦେ କୁମ୍ଭୀର କାନ୍ଦଣା
ଝୁରେ ଦ୍ରଉପଦୀ ଶାଢ଼ି,
ଶରଧାବାଲିରୁ ଶରଧା ହଜିଲେ
ରଜା ହୁଏ ନାହିଁ ଚାକର !
ମୁଁ କାହାକୁ କରିବି ମକର ?

ଚଉକି ଚଉକି ପାଗଳ ମଣିଷ
କଲବଲ ଜୀଏଁ ଜୀବନ,
ରାତି ପାହିଯାଏ ତଥାପି ସକାଳ
ହୋଇଯାଏ ସାତ ସପନ,
ମକର ଚାଉଳ ନ ବାଣ୍ଟି 'ମନୁଆ'
ବାଣ୍ଟି ଦେ' ହୃଦ ତୋହର,
(ସେ କଥା) କହିଲା ସୁନାମୀ ଲହର ।
ଆସ, କରିବି ତୁମକୁ ମକର,
ନାହିଁ ଆଉ କାହିଁ ନିସ୍ତାର
ଆସ, କରିବି ତୁମକୁ ମକର ।

***

●

ମାତିଲେଣି ପଙ୍ଗପାଳ ହୋ
ମାତିଲେଣି ପଙ୍ଗପାଳ ।
ଦିଅଁକୁ ଖାଇଲେ
ଖଟୁଳି ଖାଇବେ
ନିଦ ତ ଖାଇଲେ
ସପନ ହରଣଚାଳ ହୋ
ଜୀଇଁଥିବ ଯେତେକାଳ ହୋ... ।

କିଏ କହେ ଏଠି ଅନ୍ଧାର ନାହିଁ
ଆକାଶ ହେଲାଣି ଫରଚା
ସଭାରୁ ଉଠିକି ସବାଖିଆ ବୋଲେ
କର ନାହିଁ ଆଉ ଚରଚା
ଟାଙ୍ଗରା ମୁଣ୍ଡରେ ପାନିଆଁ ବୁଲାଅ
ପଛେ ନ ଥାଉ ଗୋଟିଏ ବାଳ ହୋ
ଜୀଇଁଥିବ ଯେତେ କାଳ ହୋ... ।

ନଈ ନାହିଁ ଏଠି ନିତି ଆସେ ବଢ଼ି
ସମୁଦ୍ର ନ ଥାଇ ଜୁଆର
ଅମୁହାଁ ଦେଉଳେ ଠାକୁର ଗାଏବ
ଭଗତିରେ ଖାଡ଼ା ଜୁହାର
ଖଟିଖିଆଙ୍କର ଦୁଃଖ ଅସରନ୍ତି
ଘରେ ପସୁ ପସୁ
ମୁଣ୍ଡରେ ବାଜଇ ଚାଳ ହୋ
ଜୀଇଁଥିବ ଯେତେ କାଳ ହୋ... ।

ଆକାଶଟା ସାରା ହାଉଯାଉ ତାରା
ଘଡ଼ିମାରେ ନାହିଁ ଜହ୍ନ
ଛେଳି ଗୋଡ଼ରେ କି ଧାନ ବେଙ୍ଗାଳିବ ?
(ବିନା) କଦମ୍ବରେ ବଂଶୀସ୍ୱନ ?
ବେଳ ରତ ରତ, ବୁଝିଯା' ଏଥର
ତିଳକୁ କରନା ତାଳ ହୋ
ଜୀଇଁଥିବ ଯେତେ କାଳ ହୋ... ।

ବୁଢ଼ା କବିଟିଏ ଦାଢ଼ୀକୁ ସାଉଁଳି
ମୁଚୁକି ମୁଚୁକି ହସେ
ନିଜକୁ ବଖାଣେ ନଖି-ତୁଳସୀ
ତାକୁ ପାରୁଡ଼ା ପୋକ ବି ବାସେ
ନିଶାତଳେ ଧୀରେ ବହିଲେ ପବନ
ଦିହରେ ଗଜୁରେ ଝାଳ ହୋ
ଜୀଇଁଥିବ ଯେତେ କାଳ ହୋ... ।

ନିଜ ପାଇଁ ନିଜେ ଛାମୁଣ୍ଡିଆ ବାନ୍ଧି
କରୁଥାନ୍ତି ସଂକୀର୍ତ୍ତନ
ଓଡ଼ିଆ ମାଟିକୁ ପବନର ହାଇ
ନାହିଁ ସେ ପଟକୁ କାନ
ଶୁଖିଲା ନଈରେ ନାଆ ଚାଲୁଥାଏ
ମିଳେ ନାହିଁ ଥଳକୂଳ ହୋ...

ଏବେ ପାହି ଛୁଇଁବାର ବେଳ ହୋ
ଜୀଇଁଥିବ ଯେତେ କାଳ ହୋ... ।

★★★

●

ଭାବରେ ଭାବରେ ଯୋଡ଼ିହେଲି ସିନା
ଅ-ଭାବରେ ବିତେ ବେଳ,
ଭବ ସାଗରରେ ଉବୁଟୁବୁ ଖାଲି
କିଏ ସେ କରଇ ଖେଳ ?
ଦେଖୁଅଛି ମହାକାଳ !

ଦାତା ଓ ମାଗନ୍ତା ହାତ ଧରାଧରି
ଏକଇ ପଙ୍ଗତେ ମେଳି,
ଓଠରୁ ଝରଇ ଲୁହ ଆଉ ମହୁ
ଚିତାଗ୍ନିରେ କୋଳକୋଳି ।
ତିଳକୁ କରନ୍ତି ତାଳ,
ଦେଖୁଅଛି ମହାକାଳ !

କବିଏ ସାଜନ୍ତି ଭାଟ ଓ ଭିକାରୀ
ଲୋଡୁଥାନ୍ତି ସିଂହାସନ,

କଣ୍ଟାର ମୁକୁଟ ଲାଗି କଣ୍ଟଗଡ଼େ
ଦର କଷେ ମହାଜନ ।
ମିଛେ ବହୁଥାଏ ଲାଳ,
ଦେଖୁଅଛି ମହାକାଳ !

ସପନରେ ଖାଲି ବିତିଯାଏ ରାତି
ରତି ପାଇଁ ନାହିଁ ବେଳ,
ଅପସୃଜନରେ ମାତେ ମତ୍ତହସ୍ତୀ
ଦଳଇ ଗଜରାମାଳ ।
ଇଏ ଅଣସର ଘର ଖେଳ,
ଦେଖୁଅଛି ମହାକାଳ !

ଭୟରେ କୁଡ଼ିଆ ଭିତରେ ମଣିଷ
ହୁଏ ସିନା କଲବଲ,
ମହାଶୂନ୍ୟର ଏ ପିଙ୍ଗଳା ପଞ୍ଝୁରୀ
ଆମ୍ଭାକୁ କରଇ ଗେଲ ।
'ଓରାନ୍'ଠାରୁ 'ଉହାନ୍' ନଗରୀ-
ସଂଗରୋଧର କି ବଳ ?
ଦେଖୁଅଛି ମହାକାଳ !

ରାଜଧାନୀର ଏ ରାଜରାସ୍ତା ପରେ
ଯେତେ ସବୁ ପଟୁଆର
କିଏ ତା'ର ବାପା କିଏ ସେ ବା ମାଆ
ଫିଟୁନି ଗଣ୍ଠି-ଗୁମର ।
ଧନ୍ୟ ଧନ୍ୟ କଳି କାଳ
ଘରେ ପସୁ ପସୁ ବାଜିଲାଣି 'ମନୁ'
ମୁଣ୍ଡରେ ତୋହର ଚାଳ,
ଦେଖୁଅଛି ମହାକାଳ !
ଦେଖୁଅଛି ମହାକାଳ !

★★★

**ଓରାନ୍:** ଆଲ୍‌ଜେରିଆର ଏକ ପ୍ରମୁଖ ସହର ଯେଉଁଠି 'ପ୍ଲେଗ୍' ମହାମାରୀ ତାଣ୍ଡବ ରଚିଥିଲା ।
**ଉହାନ୍:** ଚୀନର ଏକ ସହର ଯେଉଁଠି 'କରୋନା' ଭୂତାଣୁ ବିଶ୍ୱବ୍ୟାପୀ କାୟାବିସ୍ତାର କରିଛି ଏବେ ।

●

ଲେଉଟିଲା ଭାଇ ଲକ୍‌ଡାଉନ୍ !
ଚୁପ୍‌ଚାପ୍ ଏବେ ସାରା ଟାଉନ୍ !!

ରୋଗ ବଢ଼ିଚାଲେ ଓଷୁଅ ନାହିଁ
ଅନ୍ଧାରରେ ଖାଲି ବାଡ଼ି ବୁଲଇ
କିମିତି ଧରିବ 'କରୋନା' ବେକ ?
ବତା ତୁ କାଳିଆ ଗୁହାରି କରୁଛୁ
କେହି କିଆଁ ତା'ର ଟେର୍ ପାଉନ୍...
ଚୁପ୍‌ଚାପ୍ ଏବେ ସାରା ଟାଉନ୍ ।

ହିସାବ ନିକାଶ ସକାଳୁ ସଞ୍ଜ
ଭାକ୍ସିନ୍ ବେଳକୁ ସଭିଏଁ ବାଞ୍ଛ
'ଇମ୍ୟୁନିଟି' କଥା ଶୁଣିଶୁଣିକା,
'କମ୍ୟୁନିଟି' ଖେଳ ବଢ଼ାଏ ଦକା ।
ବନ୍ଧୁମାନେ ଏବେ ଅବନ୍ଧୁ ହେଲେଣି
ଦୁଆର ବନ୍ଦ ତ ଲକ୍ଷ୍ମଣରେଖା ।

ଗୋଡ଼ କାଢ଼ିବାକୁ ବଳ ପାଉନୁ...
ଚୁପ୍‌ଚାପ୍ ଏବେ ସାରା ଟାଉନୁ।

ହୁ ହୁ ବଢ଼େ ବଜାର ଦର
ମଣିଷର ମୂଲ କେବେଠୁଁ ଛାର
କାଲିଆର ଦେଖ ଅଜବ କାଣ୍ଡ,
କବାଟ କିଳିକି ଭଗତ ବସଇ
ରଥେ ଦୁଲୁକଇ ତା' ବଡ଼ଦାଣ୍ଡ।
ପୁଲିସି ଲାଠିକି ବେଖାତିର କରି
ଜନତା ବାହାରେ ବଜାର ବୁଲି
କେତେଦିନ ଆଉ ପେଟେ ଓଦାକନା
ଜଳାଇ ରଖିବ କିମିତି ଚୁଲି ?
ତଥାପି ମୁହଁରେ ତୁଣ୍ଡି ଦଉନୁ
ଚୂପ୍‌ଚାପ୍ ଏବେ ସାରା ଟାଉନୁ।

***

●

ଶୂନରେ ଶୂନକୁ ମିଶାଇଲେ ମିତ !
ହେଲା ପୁଣି ସେଇ ଶୂନ,
ଶୂନରୁ ଶୂନକୁ ଫେଡ଼ାଣ କଲି ମୁଁ
ବାକି ବଳିଗଲା ଶୂନ।
ମିଶାଣ ଫେଡ଼ାଣ
ଗୁଣନ ହରଣ
ପିଣି ପିଣି ଡାକେ ବୁଢ଼ାକାଳେ ଅଙ୍କ
ତୁ ଟେର ପାଇବୁନି, ଧନ !
ଏବେ 'ମନୁ', ଭଜୁଥା' ରାତିଦିନ।

ଚଉଦ ଭୁବନ ବୁଲିବୁଲି ସିନା
ପାଇଲି ଚଉଦ ବଖରା,
ଚଉଦ ବରଷ ଗଲାଣି ତ ବିତି
ଘଣି, କିଆଁ ଆଉ ଏତେ ନଖରା !
ହିସାବ ନିକାଶ କରେନା କାଳିଆ

ରତନ ଭଣ୍ଡାର ଚାବି ମିଳେନାହିଁ
ମେଲା-ସାହାଣରେ ମଇଦାନ।
ତୁ ଟେର ପାଇବୁନି, ଧନ !
ଏବେ 'ମନୁ', ଭଜୁଆ' ରାତିଦିନ।

କଙ୍କର୍ଥନିଆ 'ଭୂତାଣୁ'କୁ ଭୁଲି
ମାତାଲ ମାହାର୍କେ ଧାଡ଼ିରେ ହୁଅନ୍ତି ଠିଆ,
ମୁଚୁକୁନ୍ଦି ହସି ଚାହେଁ ସାଉକାର
ଦେଖି ଲାଗେ ଅଚାବୁଆ !
ଭଙ୍ଗା ନାଇଟିରେ ପଅମ ଦଉଚି
ସମୟର ପଦଚିହ୍ନ,
ତୁ ଟେର ପାଇବୁନି, ଧନ !
ଏବେ 'ମନୁ', ଭଜୁଆ' ରାତିଦିନ।

ପାହିବ ପାହିବ ଅମାରାତି ବୋଲି
ଠିଆ ପହଡ଼ରେ କଂସାର କବାଟ ମେଲି,
କୋଳେଇ ନେଇଛି ବଳିଆର ଭୂଜ
କଳଙ୍କ ତ ଗଳାମାଳି
ମାତା, ଭ୍ରାତା ଆଉ ସୋଦର ଶବଦ
'ଖତିୟାନା' ତଳେ ଲୀନ
ତୁ ଟେର ପାଇବୁନି, ଧନ !
ଏବେ 'ମନୁ', ଭଜୁଆ' ରାତିଦିନ।

ଦିନ ଦିନ ନୁହେଁ ରାତି ନୁହେଁ ରାତି
ଏଠି ଷଣ୍ଢ ପଢ଼େ ଭାଗବତ,
ଛୋକାର କବିଟି ଅଣ୍ଟାକୁ ନୁଆଁଇ
ମାନ-ହୀନ ଗୋଟେ 'ମାନପତ୍ର' ପାଇଁ
କରୁଥାଏ ଦଣ୍ଡବତ
ସତେ କି ବିକଳ ହୀନିମାନ !
ତୁ ଟେର ପାଇବୁନି, ଧନ !
ଏବେ 'ମନୁ', ଭଜୁଆ' ରାତିଦିନ।

ମୁହଁ ଭଡ଼ଙ୍ଗିଆ ଚାକର ଚୋକର
ଚଉକିରେ ଖାଲି ଆଖି
ହେଲେ ଖାଉନ୍ଦ ଦେଉଛି ଧକ୍କା,
ଢୋକପାଣିଆକୁ ବଙ୍କୁଲି ଅଣ୍ଟା
ହୃଦୟଟା ମାଛରଙ୍କା,
ରାତି ସରିନାହିଁ, ସପନ-ଉଡାନ
ଆଶାବାଡ଼ି-ବ୍ୟୋମଯାନ
ତୁ ଟେର୍ ପାଇବୁନି, ଧନ !
ଏବେ 'ମନୁ', ଭଜୁଥା' ରାତିଦିନ
କାବେଡ଼ା ପରିକା ଏବେ ପୂଜୁଥା' ଶୂନ୍ୟସ୍ଥାନ
ଆଉ ଗାଉଥା' ଶୂନ-ମୂରୁଛନା ଗାନ ।

***



ଚାଇନାରେ ଚାଇନା !
ତୁ ଭଲ ଦେଖେଇଲୁ ଆଇନା !
ହାତରେ ନ ମାରି ଭାତରେ ମାଇଲୁ
ବାଉଳା ହେଲାଣି ମଣିଷ ଜାତିଟା
ବାପକୁ ଡାକୁଛି ଭାଇନା
ତୁ ଭଲ ଦେଖେଇଲୁ ଆଇନା ॥

ତୋ ହସରେ ଏବେ ତ ବିଷ
କଥାକେ ମୋଡୁଚୁ ନିଶ
ଏବେ ଅମା ଅନ୍ଧାର ରାତି
ହେଲେ ଖୋଜୁଛୁ କଜଳପାତି
ଏ ପଟରେ ନିଆଁ
ସେପଟେ ତ ଜାଲ
ଅଣସର ଘରେ ଅଳସ ଭାଙ୍ଗେନା
(ଏବେ) ମେଘମାଳିଆକୁ ଦେ' ବଇନା
ତୁ ଭଲ ଦେଖେଇଲୁ ଆଇନା ॥

ମିଛି ମିଛିକା ଏ ସଟଡାଉନୁ
ବୋହୂଚୋରୀ ଖେଳେ ସାରା ଟାଉନୁ
ଘରେ ବସିଲେଣି ମରଦ ପୁଅ
ଚୁଲି ଜଳିବ ତ କେମିତି କୁହ ?
ଧାଇଁଧାଇଁ ଘୂରେ ବିଞ୍ଚଣା ନଳୀ
ନାଗାଡାଟି ଖୋଜେ ପବନା
ତୁ ଭଲ ଦେଖେଇଲୁ ଆଇନା ॥

ଚତୁରୀର ଦେଖ ଚାହାଣୀ
ଗପ ନୁହେଁ ସେ ତ କାହାଣୀ
ପିଲା ପକେଇକି ବାଟ ମଝିଟାରେ
ଡରାଉଛି ହେଇ ଡାହାଣୀ
ନାକ କାନ୍ଦୁରୀର ହସକାନ୍ଦ ଏକ
ଡାହୁକର କାହିଁ ମାଇନା ?
ତୁ ଭଲ ଦେଖେଇଲୁ ଆଇନା ॥

ମାଗିଅଣା ତିଅଣରେ
ଚାଲିଛି ଏବେ ଭୋଜି
ଦୁନିଆ ଏବେ ଚୁଲିକି ଯାଉ
ମିଆଁ ବିବି ତ ରାଜି
ରାତି ସାରା ତ ମୁଗୁରା ମେଳା
ବାପ ପୁଅଙ୍କ ପେଏଣ୍ଟ ଢ଼ିଲା
ବଣି ପୋଷିବା ଝିଣ୍ଟିକା ମାରି
ନିଜକୁ ଏବେ ଠକିବା ଲାଗି
ଖୋଜିବା ନୂଆ ବାହାନା
ତୁ ଭଲ ଦେଖେଇଲୁ ଆଇନା ॥

ଦିନବେଳା ପରା ତାଟି କବାଟ
'କୋକୁଆ' କରଇ ସବୁଠି ନାଟ
ବାବୁ ଭୟାଙ୍କର ସରୁନି ହଟ
ଢେଗା ଆଖିଆ ତ ବଡ଼ ଜାଲମ
ଆଞ୍ଜୁଡ଼ା ନ ଥାଇ ମାରେ ମଲମ

ପାଟି ଫିଟେଇଲେ ଗୋଟି ଚଳେଇବ
'ମନୁଆ' ବାଜୁଥିବ କଳଗାଉଣା
ତୁ ଭଲ ଦେଖାଉଥା ଆଇନା ।

***



ହେ ଭଗତେ !
ରୋଗ ଯାଏ ବଢ଼ି ବଢ଼ି,
ଭୋଗ ଏବେ ପରା ସରଗ ନିଶୁଣି
ଶୋଇଥା' କମ୍ବଳ ଘୋଡ଼ି !

ହେ ଭଗତେ !
ନଈରେ ଚହଟେ ବାଳିଆ,
ଶୁଣ୍ଢି ଓ ମାତାଲ ଗୋଟିଏ ମଞ୍ଚରେ
ନାଟ ଲଗେଇଛି କାଳିଆ !

ହେ ଭଗତେ !
ତିଳକୁ କରନା ତାଳ,
ଦିଅଁକୁ ଖାଇଲେ, ଖଟୁଳି ଖାଇବେ
ଦେଖୁଥିବ ମହାକାଳ !

ହୋ ଭଗତେ !
କୋକୁଆର ଏବେ ଡର,
କିଏ ରୋଗୀ ଏଠି କିଏ ସେ ବଇଦ
ବୁଝିବାକୁ ନାହିଁ ତର !

ହୋ ଭଗତେ !
ୱେବିନାର୍‌ରେ କି ମଜା,
ଯିଏ ହିଁ ବକତା, ସିଏ ଏକା ଶ୍ରୋତା
ତେଲିଙ୍ଗି ବାଇଦ ବଜା !

ହୋ ଭଗତେ !
ଦୁଲୁକୁଚି ରାଜଧାନୀ,
କିଏ ସେ ମୁରୁଖ, କିଏ ବା ପଣ୍ଡିତ,
କିଏ ସେ ସତିଆ, କେ' ତାହା ମିଛୁଆ
ପାରୁନି ଜନତା ଜାଣି !
ପେଞ୍ଚ ସେଇଠାରେ ମଣି !

***

●

ତୁ ମନେ ମନେ ଭାବୁ ଓଡ଼ିଆ !
ଢ଼ିପେଇ ଢ଼ିପେଇ ଚାଲୁଅଛୁ କିଆଁ ?
ଆଇନା ଆଗରେ ଠିଆ ହେଇ ଦେଖ
ଗୋଟାପଣେ ଦେଢ଼ ଗୋଡ଼ିଆ ! !
ତୁ ମନେ ମନେ ଭାବୁ ଓଡ଼ିଆ !

ପେଟ ପାଇଁ ଦାନା
ଦିହ ପାଇଁ କନା
ମୁଣ୍ଡ ଗୁଞ୍ଜିବାକୁ ଘର
ରିହାତିରେ ଏବେ
ସବୁ ମିଳିଯାଏ
ଯିବା ଯାଏ ସ୍ୱର୍ଗଦ୍ୱାର
ଅଲାଜୁକ ମୁହେଁ ଖଡ଼ାଗଛ ପରା
ଭିକାରୀ ବାପୁଡ଼ା ମାଗଣା ପାଇଲେ
(ତାକୁ) ଲାଗେ ସବୁ କିଛି ବଢ଼ିଆ
ତୁ ମନେ ମନେ ଭାବୁ ଓଡ଼ିଆ !

ହାତ ପାତି ନେଲ
ମଗଜ ବିକିଲ
ଭାଉ ଯା'ର ମାଛ ଶାଗ
ଘରବୁଡ଼ି ପାଣି
ଆଣ୍ଠୁଏ ହେଲାଣି
କୁହ ଦୁଲୁକୁଛି ମେଘ ?

କୋଳଥ ହେଲାଣି ଆପେ ଆପେ ଚୋପା
ଦେଖି ଦେଖି ବିରି ବାଡ଼ିଆ
ତୁ ମନେ ମନେ ଭାବୁ ଓଡ଼ିଆ !

ବସିଛି ସେ ମଣି
ଦେଖ ତା'ର ଠାଣି
ଦେଖା ଯାଉନାହିଁ ଘୁଡ଼ି
ପେଇଲାଣି ସୂତା
ତା' ଗଜମୁକୁତା
ମାପିଚି ସବୁରି ନାଡ଼ି
ନାଡ଼ି ହଜିଗଲେ ନୀଡ଼ ଭାଙ୍ଗିଯିବ
ଖାଉଥିବୁ ଛେନା ତାଡ଼ିଆ
ତୁ ମନେ ତ ଭାବୁ ଓଡ଼ିଆ !

ଓଡ଼ିଆ ତୋ ଭାଷା
ଅଛି କି ଭରଷା ?
କହ, ଲେଖ ଆଉ ପଢ଼
ଭାନୁମତୀ ପଶା
କରେ ଲୋକହସା
ବାରହାତ ଖଣ୍ଡା ଛାଡ଼
ସମୟ ସାଜିଛି ବେଲାଳସେନ
ପବନ ହେଲାଣି ଝଡ଼ିଆ
ତୁ ମନେ ମନେ ଭାବୁ ଓଡ଼ିଆ !

★★★



ଥୟ ଧର ଟିକେ ଥୟ ଧର
ତୁଚ୍ଛା କଥାଟାରେ ହରବର
ଆଲୁଅ ତ ଅଛି ଅନେକ ଦୂରରେ
ଏତେବେଳୁ କିଆଁ ତରତର ।
ଆଲୁଅ ଗିଳିଲା ଅନ୍ଧକାର
ଅନ୍ଧାର ଗିଳିଲା ଛାଇ ତୋର
ନିଜ ଛାଇ ଦେଖି ଏତେ ଡର !
ଥୟଧର ଟିକେ ଥୟଧର...

ଅଣ୍ଟିରେ ଅଣ୍ଟିଏ କଳିରଖି
ଆପଣା ମହତ ଦେଲୁ ବିକି
ପର ତିଅଣରେ କି ଶରଧା ଆହା
ମାଗି ମାଗି ଟିକେ ଦେଉ ଚାଖି
ଆପେ ଠୋ ଠୋ ମଦନ ଗୋପାଳ
ଆନ ଗୋଇ ଖୋଲୁ ବେଳ ଦେଖି ।

ଚନ୍ଦେଇବୁ ବୋଲି ଭାବୁ ଯାହା ।
କି ଘର ସାହାବୀ କଥା ଏହା ?
ନିଲଠାଙ୍କ ପରି ମାଗୁ ଝୋଳ
ଝୋଳ ତ ମିଳେନା ବୁହେ ଲାଳ
ଥୟଧର ଟିକେ ଥୟଧର...

ଆଗପଛ ଏଠି କିଛି ନାହିଁ
ସବୁ ସୁଖ ଥାଇ ଗଲା କାହିଁ ?
କରଜକୁ ସୁଧ ଯାଏ ଖାଇ
ବିକଳରେ ପୁଅ କିଆବଣେ ପଶେ
ବାପ ଟଙ୍କା ଲାଗି ହାଇଁ ପାଇଁ ।
ମୁତୁରା ମୁତୁରି ଏକଜୁଟ
ଗନ୍ଧ ବାହାରୁଛି ଭଟ ଭଟ
ମାରା ହୋଇଗଲା ସବୁ ମଠ
କାଦୁଅରେ ଦୁହେଁ ଲଟପଟ
ହେଁସ ଧୋଇବାକୁ ଦୁହେଁ ତ ଅରାଜି
ରାତିସାରା ଖାଲି ଫୁଟ ଫାଟ ।

ଥୟଧର ଟିକେ ଥୟଧର
ମିଛରେ କାହିଁକି ହରବର
ଦୀପ ଆଲୁଅରେ ମୁହଁ ତୋର
କଳା ପଡ଼ି ହେଲା ଜରଜର
ଧରା ପଡ଼ିଯିବ ଜଣା ପଡ଼ିଯିବ
କିଏ ସାଧୁ ଆଉ କିଏ ଚୋର
ମିଛଟାରେ କିଆଁ ତରତର
ଥୟଧର ଟିକେ ଥୟଧର...

★★★

(୧୯୭୫ ଜାନୁଆରୀ ସଂଖ୍ୟା 'ଆସନ୍ତାକାଲି'ରେ ପ୍ରକାଶିତ)



ଜଗିଲେ ଜଗ
ଜଗି ନପାରିଲେ ଘରେ ପଶିଯିବ ଥଣ୍ଟିଆ ବଗ ।

ସୂରୁଯ ଉଇଁଛି– ଥେଇ ଥେଇ
ପୁଅ ଥେଇ ଥେଇ
ବାଘୁଣୀ ମାତିଛି– ନାଇଁ ନାଇଁ
କାହିଁ ଶୁଣା ନାହିଁ ?
ମହୁ ବରଷୁଛି–ହାଇଁ ପାଇଁ
ପୁଅ ଯାଏ ପିଇ
ଲୁହ ବରଷୁଛି– ହଅ...ହଃ
କାହିଁ ଦେଖା ନାହିଁ ?
ପେଟ ନୁତୁପୁତୁ ମୁହେଁ ଏକାଦଶୀ
ସଲାସୁତରାରେ ଲଗାଇବ ଫାଶି ଖୋଜିବ ଭାଗ
ଜଗିଲେ ଜଗ...

ସପନ ଦେଖିବା– ହଉ ହଉ
ଆଚ୍ଛା ଦେଖାଯାଉ
ନିଦ ଚାଲିଗଲା !– ଥାଉ ଥାଉ
ପାଟି ବନ୍ଦ ଥାଉ
ମଇତ୍ରି ବାଣ୍ଟିବା–ବାଆ....ବାଃ
କେଡ଼େ ମଜା କଥା
ମୁଖା ପିନ୍ଧା କିଆଁ ?...ଓ....ହୋଃ
ଭାରି ମୁଣ୍ଡ ବଥା
ଅସଲ କଥାକୁ ମଥା ଯାଏ ଘୁରି
ଗୋଟିଏ ନାଆକୁ କୋଟିଏ ନାଉରି–ଦେଖୁଥା ବାଗ
ଜଗିଲେ ଜଗ...

କୁମ୍ଭୀର କାନ୍ଦଣା– କାହା ପାଇଁ ?
ଆଉ ବେଳ ନାଇଁ
ମଣିଷ ମାଜଣା– ରହିଥାଉ ଆହା ରହିଥାଉ
ତେଲିଆଙ୍କ ପାଇଁ
କାଳିଆର କୁଟ– ସରିନାହିଁ ଏବେ ସରିନାହିଁ
କେବେ ସରିବନି
କାଳର କୁହାଟ– ଛିଡ଼ି ନାହିଁ;
କେବେ ଛିଡ଼ିବନି
ଅସଲ ନାଟତ ସରିଗଲେ ଯିବ
ଆତ୍ମାରେ ଆତ୍ମାକୁ ବସି ଦେଖୁଥିବ–ଲିଭିବ ଦାଗ
ଜଗିଲେ ଜଗ...

★★★



ନାଚ କରୁ କରୁ ଢୋଲ ଫାଟିଗଲା
ବରଜାତି ହେଲେ ଦୋଷୀ,
ରାଜାପୁଅ ଲାଗି ରାଇଜରେ ମେଳି
କଟୁଆଳ ପାଏ ଫାଶୀ
ଭଲା ଏ ରାଇଜ ନୀତି-
କିଏ କହେ ଏଠି ଚନ୍ଦର ଉଦିଆ
କିଏ ବୋଲେ ନିଶାରାତି ।
ରାଇଜ ଭିତରେ ହଜାରେ ସତୀ
ମଇତ୍ରୀ ବଣ୍ଟାରେ ବିତାନ୍ତି ରାତି
ପରଜାଏ ମିଛେ ଉଠନ୍ତି ତାତି
ସତୀ କିଆଁ ହେବେ-ଗରଭବତୀ ?
ଘୁରଇ ସତୀଙ୍କ ମଥା
ଯା' ହବାର ଥିଲା
ଅବଶ୍ୟ ଘଟିଲା
ଆଉ କିଆଁ ମୁଣ୍ଡବଥା ?

ବୋଲି ଥକିଗଲେ ପଦୁଅଁତୋଳା
ଧଣ୍ଡଛୁଆ ଏଠି କରନ୍ତି ମେଳା
କେଳା ବାପୁଡ଼ାର ମଗଜ ଢ଼ିଲା
କାହିଁ ଗଲେ ସବୁ ଗୋଖର ପିଲା ?

ବୁଡ଼ିଲା ଭେଳା–
'କପାଳ ଲିଖନ
କେ କରିବ ଆନ'
ବାହାରକୁ ସିନା ଲାଗିଛି ପାଲାରେ
ଭିତରଟା ସାରା ପୋଲା...

ବିବେକ ଏଠାରେ ହାଟ ସଉଦା
ମନ ବଟୁଆଟି ରୁହଇ ମୁଦା

ଏଉଡ଼ି ମାରି କି ଲାଭ ?
ପେଟରେ ତ ଭୋକ
ମୁହେଁ ମିଛେଲାଜ
ତୁଚ୍ଛାକୁ ପୀରତି ଭାବ

***

●

ମନ ପରବତେ ବାନ୍ଧିଗଲି ସେତୁ
ପଡ଼ିଯାଏ ବାଲିଚର
ଗରବ ଗଞ୍ଜନେ ଥାପୁଁ ଥାପୁଁ ପାଦ
ଖସିଯାଏ ରସାତଳ ।

ପାଣି ତ କୁମ୍ଭୀର ମାଟି ହେଲା ବାଘ
ମାଟିର ନୁହେଁ କି
ନୁହେଁ ଆକାଶର
ମଝି ଘାଟେ ସିନା ତ୍ରିଶଙ୍କୁ ଯୋଗ,
କାଳିଆରେ !
ଭଲକରି ଏବେ ଶୁଉଝୁ ରାଗ ।

ମୁକତି ପାଇଁ କି ଯେତେ ଡହଳ
'ଧ୍ରୁବପୁର'ରେ ରାବେ ଶିଆଳ
ଓଁକାର ପାଇଁକି କାହାର ବେଳ ?
ପବନେ ପରାଣ କରି ଅଚଳ

ବଇତରଣୀକୁ କରି ଲୋଭ
ଜୀବନ ନୁହେଁ କି
ନୁହେଁ ମରଣ
ମଝିଘାଟେ ସିନା ତ୍ରିଶଙ୍କୁ ଯୋଗ.....
ନେତାଏ ଏଥର ପୁଞ୍ଜି ପୁଞ୍ଜିକା
ପ୍ରଜ୍ଞା ହାଟେ ବୁଦ୍ଧି ଚାଲଇ ବିକା
ଶିରିପା ଯା' ମୁଣ୍ଡେ ଦେଲୁ ଚଢ଼େଇ
କେତେ ଦିନ ପାଇଁ ଏତେ ବଡ଼େଇ !

ଦୁଧ ପିଇବାକୁ ତୋଳିଲୁ ଶାଗ
ନାତୁଆ ନୁହେଁ କି
ନୁହେଁ ଦୁହାଁଳ
ବରଡ଼ ଗାଈଙ୍କ- ତ୍ରିଶଙ୍କୁ ଯୋଗ....

ଲୋକେ ଜାଣିବାକୁ ଗାଈ ସୁଧାର
ଭିତର କଥାକୁ କାନ ବଧୀର
ମୁଖ ଫିଟାଇଲେ ସବୁ ଅଡୁଆ
ଦୁଃଖ ନ ଯାଉଣୁ ଯୋଡା ବାଡ଼ିଆ

ଯେ' ଯାହାର ଲାଗି ବାନ୍ଧୁଚି ପାଗ
ଏ କୂଳ ନୁହେଁ କି
ନୁହେଁ ସେ କୂଳର
ଜନତାର ଖାଲି ତ୍ରିଶଙ୍କୁ ଯୋଗ.....
କାଳିଆରେ !
ଭଲକରି ଏବେ ଶୁଉଝୁ ରାଗ ।

★★★



ରୋଇଲା ଫଳ ଖା', ଉଖାର୍ ନିଜ ଘା'
ଲାଗୁ ବା ପିତା, ହଉ ବା' ଗନ୍ଧ
ହାମୁଡ଼ି ପଡ଼ି ଥା'
ଅଧରପଣା ବାଜୁ ନ ବାଜୁ
କହୁଥା' ଖାଲି ଆଃ...ଆଃ...
ଆଁ କରି ତୁ ଦେଖା ଭେଳିକି
କହୁଥା' ମିଛେ ମୁଁ କଲ୍‌କୀ
କଲ୍‌କୀ ହବୁ, କଳଙ୍କ ନବୁ
ଦଶ ଦୁଆରେ ଶିକୁଳି ଦବୁ
ଦାନ୍ତ ଚିପି କହୁଥିବୁ;
                    ମୁଁ ଅଜର, ମୁଁ ଅମର
                    କୋଳକୁ ମୋର ଆ' !
କୋଳକୁ ତୋର ଯିବିରେ କିଆଁ ?
ପେଟରେ ଜଳେ ଜୁଇର ନିଆଁ

ହସିଲେ ସଁ, କାନ୍ଦିଲେ ଫଁ
ଗଲା ! ବୋଇଲେ ଜାବୁଡ଼ି ଧ'
ଛାଡ଼ିବି ନାହିଁ, କହବେ ଶାଳା !
କିସ ତୋ ବାପ ନାଁ ?

ବାପର ଦାବି: ହଅ ଗୋଲାମ୍
ମାଆର ଦାବି: ଦେଏ ସଲାମ୍
ସାଥିରେ ଅଳି: ହଅ ନିଲାମ୍
ତାବ୍‌ଦା କାନ, ଜଳକା ଆଖି
ମନଟା ସିନା କହୁଚି ଖାଲି
ଏଠୁ ପଳାଇ ଯା'......

ସାଧୁ କହଇ: ଶାନ୍ତ ହୁଅ
ଖଣ୍ଡ ହସଇ: ଭ୍ରାନ୍ତ ହୁଅ
ରାଜା ଭାଷଇ: କ୍ଷାନ୍ତ ହୁଅ
ଥରୁଛି ହାତ ଥରୁଛି ଛାତି
ବିବେକ ଖାଲି ଆଙ୍ଗୁଠି ମାରେ
ଟିକିଏ ରହି ଯା'............।

କଦମ୍ ତାଲ୍ କଦମ୍ ତାଲ୍
ପୀରତି ମଦେ ମୁଁ ମାତାଲ୍
ତୁ ମାତାଲ୍ ତୋଓରି ପାଇଁ
ପାଉନି ଜିଭ, ପାରୁନୁ ଛୁଇଁ
ଏଥିକି ଡର ! ଟଳଇ ଗୋଡ଼ !!
ଡାହାଣ ହୁଏ ବାଁ..........।

ବାହାରେ ମିଛେ ଜାକ୍‌ଜମକ
ଭିତରେ ବାଜେ ଢ଼ୋଲା ଟମକ
ଟମକ ଆଜି ହେଲା ତ କେଁ
ତୋ ଓ ମୋ କଥା ଫୁଡୁରୁ ଫେଁ
ନିଶାତଳେ ରେ ନ କହୁ ଆଉ
ଅଣଚାଷିଆ ବା'–

★★★



ଗଙ୍ଗା ଯାଉଥିଲୁ କାହା ପାଇଁ
ଗୟା ଯାଉଥିଲୁ କାହା ପାଇଁ
କିଏ ବା ବୁଝିବ ମନର ଯାତନା
ଗଛ ପତରରେ ହାଇଁ ପାଇଁ।

ଯିଏ ବା ବୁଝିବ କହିଲୁ ଆପେ
ସିଏ ଜଳିଗଲା ନିଜର ଶାପେ
ନିଜ ପାଇଁ କିଆଁ ନିଜେ ଜଳିବ
କାଉର ଦୋଷରେ ହଂସ ଟଳିବ
ଏଇ ନୀତି ଚଳେ ଜଗତ ପାଇଁ
ଗଙ୍ଗା ଯାଉଥିଲୁ କାହା ପାଇଁ ?

ମାନ ଅଭିମାନ ହୃଦୟେ ଭରି
ପୁଣି କିଆଁ ଗଢୁ ମାୟା ପଞ୍ଜୁରୀ

ମାୟାରୁ ଶରଧା ହୁଅଇ ଜାତ
ଶରଧାର ଏକା ସିଦ୍ଧି ସଙ୍ଗାତ
ଶରଧା ନଥିଲେ ସିଦ୍ଧି ତ ନାହିଁ
ଗୟା ଯିବୁ ଭଲା କାହା ପାଇଁ ?

ଅବେଳାରେ କିଏ କାହାର ସଖା
କଦଳୀ ବିକିରି ଫିସାଦି କଥା
କଥା ବାହାନାକୁ ଯାତରା ଦେଖା
'ଦୁତିକୁମର' ମୁଁ ଜଗତ ସଖା
ନ ବୁଝିଲେ ପେଡ଼ି ଫିଟିବ ନାହିଁ
ଗଙ୍ଗା ଯିବୁ ତେବେ କାହା ପାଇଁ
ଗୟା ଯିବୁ କହ କାହା ପାଇଁ ?

***

ଏ ସଂସାର ବିଚିତ୍ର ମାୟାବୀ
ଯେଉଁଠି ମଣିଷ ଭାବେ
ସିଏ ଏଇ ପୃଥିବୀର ଏକା ଅଧୀଶ୍ୱର ।
ମଣିଷକୁ ବାଦ୍ ଦେଇ
ଯେତେ ଜୀବଜନ୍ତୁ, ଗୁଳ୍ମଲତା
ଝରଣା, ଆକାଶ
ନଦୀ ଓ ନକ୍ଷତ୍ର
ସବୁକିଛି ତା' ପାଖେ ବେକାର ।

ମଣିଷ ବୁଝିବ କାହୁଁ
ନିଜ ଧ୍ୱଂସଲୀଳା ମଞ୍ଜି
ସଂଗୁପ୍ତରେ ଦେଇଛି ସେ ପୋତି,
ମୃତ୍ୟୁ ନାଚ ଦେଖୁଥାଏ
ତା'ର ମଣିଷ ପଣିଆ
କାଳର ସମୁଦ୍ରେ ସିଏ
ହେଉଥାଏ ଉବୁଟୁବୁ

ତଥାପି ବୁଝେନା ମନ
ଅଜ୍ଞାନ ହିଁ ମୋର ନାଆ
ପାରେନାହିଁ କେବେ ମଥାପାତି ।

★★★

ନମସ୍କାର କରେ ଏଇ ମାଟି
ଆଉ ଆକାଶକୁ
ପାଣି ଆଉ ପବନକୁ
ଭିତରେ ଓ ବାହାରେ ମୋ
ଘେରିଥିବା ଆଲୋକକୁ
ଯାହାଙ୍କର ଋଣନେଇ
ମୁଁ ଗଢ଼ିଚି ମୋର ଏ ସଂସାର,
ଏବଂ ଦିନରାତି ତିଆରିଛି ମୂର୍ତ୍ତୀଟିଏ
ଯା'ର ନାମ ଦେଇଛି ସଂସ୍କାର
କିଏ ମୋ ଈଶ୍ୱର,
ଯାହାକୁ ମୁଁ ଖୋଜେ ବାରମ୍ବାର ?

ହିସାବ ନିକାଶ ଯଦି ସବୁ ଏଠି
ନିକିତିର କଣ୍ଟା ପରି ଠିକ୍ ଠାକ୍ ଥାଏ,
ନିଶାତଳ ପବନର ଅପେକ୍ଷାରେ
ଜୀବନଟା କିଆଁ ବିତିଯାଏ ?

ବସିଛି ମୁଁ ସତେ ଅବା ଏ ଅମା ଅନ୍ଧାରେ
କେଉଁ ଏକ ଅମୁହାଁ ଦେଉଳେ
ଧ୍ୟାନମଗ୍ନ ଯୋଗୀଟିଏ ପରି,
ହଲ୍ ନାହିଁ ଚଲ୍ ନାହିଁ
ନିଶ୍ୱାସ ପ୍ରଶ୍ୱାସ ଏକା ଜାଗ୍ରତ ପ୍ରହରୀ ।

ମୋ ଦେହେ ଗୁଡ଼େଇତୁଡ଼େଇ ବୁଲୁଥାନ୍ତି
କାଳସର୍ପ ଯେତେ ବିଷଧର,
ଯେଉଁଠାରେ ନଥାଏ ଅନ୍ଧାର

ଅଥବା ମନ୍ଦିର
ଅଥଚ ମୁଁ ଦୋହରାଇ ସାରିଥାଏ
ମୁଇଁ ନିଜେ ମୋହରି ଈଶ୍ୱର।

***

ସ୍ୱପ୍ନ ଏକ ଅନାରୋଗ୍ୟ ବ୍ୟାଧି
ଯାହାର ପଂଝାରେ ବନ୍ଦୀ
ମୁଁଇ କାଳ କାଳ,
ଜୀବନ ଜୀଇଁବା ଲାଗି
ନୁହେଁ କେବେ ଏକ ରଣନୀତି,
ଜୀବନ ବି ନୁହେଁ ଜହ୍ନରାତି,
ଅପେକ୍ଷାରେ ମ୍ରିୟମାଣ
ଯେତେସବୁ ରଙ୍ଗିନ୍ ସକାଳ।

ପ୍ରେମ ଓ କରୁଣାର ରାଶି
ଅଛି ଯେତେ ବ୍ୟାଙ୍କ ବାଲାନ୍ସ,
ବାଣ୍ଟିବାକୁ ହେବ ଅକାତରେ
ଜୀବନର ଏ ଶେଷ ରୋମାନ୍ସ।
ଏ ମନ ବି କେମିତିକା ଦେଖ
ସାଥେ ସାଥେ ଖୋଜୁଥାଏ
ଗୁରୁ ଆଉ ଚେଲା,
ଶ୍ରୋତା ନିଜେ ଗାୟକ ବି ସିଏ
ବଜାଏ ବି ଦୀର୍ଘକାଳ ଶୂନ୍ୟର ବେହେଲା।

ଏ ସଂସାରେ କିଏ ଅକୃତଜ୍ଞ
କିଏ ପୁଣି ପର-ଉପକାରୀ,
କିଏ ଏଠି ଭଲର ନମୁନା
କିଏ ପୁଣି ଦୁଷ୍ଟ ଦୁରାଚାରୀ ?
ଭଲ-ମନ୍ଦ ଯାହା ଖାଲି
ମଣିଷ ତିଆରି ଏକ ପୂର୍ବାଗ୍ରହ,
ଜୀବନ ଖେଳଇ ପୁଣି

ଘନଘୋର ବରଷା ରାତିରେ
ହାତଯୋଡ଼ି ସ୍ୱପ୍ନ ତା'ରେ
କରେ ଅନୁନୟ।

***

କହିବା ଲୋକଙ୍କ ଏଠି
ବାଜୁନାହିଁ ପାଟିରେ ବାଟୁଳି
ହେଲେ ଶୁଣିବା ଲୋକ ବି
ଏଠି ଅଭିନୟ ପ୍ରିୟ
ବଞ୍ଚେ ଖାଲି ବାହାନାରେ
ବାସ୍ତବରେ ସିଏ ଗୋଟେ କାଲ,
ପାହାନ୍ତିଆ ପହରରୁ
ପତ୍ରଙ୍କ ଗାଁରେ ବସି
ଅଲାଜୁକ ପବନ ବି
କରୁଥାଏ ଗେଲ।

ରଜା ଏଠି ଭାଷୁଥାଏ
ପ୍ରଜା ଶୁଣେ ନାହିଁ
ଅଜ୍ଞାନୀଙ୍କ ଦୁନିଆରେ
ଚିହ୍ନିବା ମୁସ୍କିଲ୍
କିଏ ଗୁରୁ, ବାପା ଅବା ଭାଇ।

ଦରକାର ବେଳେ ଏଠି
ଚିରାକନା ପାଲଟଇ ମାଠ,
ପୁଞ୍ଛୁଡ଼ି ବି ଦିଏ ପ୍ରବଚନ
ହାତୀ ତା'ଠୁଁ ଶିଖୁଥାଏ
ନୂଆ ନୂଆ ପାଠ।
ଦୁନିଆଟା ପାଲଟିଛି ଏବେ
ପାଗଳାଗାରଦ,
ଦିନରାତି ଏଠି ଖାଲି ଭଟର ଭଟର
ପୃଥିବୀ ହଜେଇଲାଣି
କେବେଠାରୁ ନିଦ।

ହେ ଅନାମ,
ପ୍ରିୟ ସର୍ବନାମ
ଏତେବଡ଼ କୋଳାହଳ ପାଶେ
କିଏ ସେ ଶୁଣିବ କୁହ
ତୁମରି ମୂର୍ଚ୍ଛନା,
ଦେଖିବାକୁ ଆଖି ଲୋଡ଼ା
ଛୁଇଁବାକୁ ହାତ ଲୋଡ଼ା
ଚାଖିବାକୁ ଜିଭ ଲୋଡ଼ା
ଶୁଣିବାକୁ କାନ ଲୋଡ଼ା
ଏ ସବୁର ଅର୍ଥ କିଛି ନାହିଁ
ଖାସ୍ ତୁମ ବିନା
ଖାସ୍ ତୁମ ବିନା ।

***

ହେ ଅନାମ ପୁରୁଷ !
ହେ ଅବ୍ୟକ୍ତ ସତ୍ତା
ତୁମେ ଚିହ୍ନ ଦୁନିଆକୁ
ଆଉ ନିଜ ଗଢ଼ା ସଂସାରକୁ
ଚିହ୍ନା, ଦୋ ଦୋ ଚିହ୍ନା ଓ ଅଚିହ୍ନା
ଈଶ୍ୱରଙ୍କୁ
ହେଲେ ଏ ସଂସାର
ଯା'ର ଚାହାଣିରେ ଭରିଅଛି
ସନ୍ଦେହର ବାରୁଦ ପାହାଡ଼
ଯିଏ ଭାବେ, ତୁମେ ଗୋଟେ
ଅଧାଗଢ଼ା ସତ୍ତା
କାହିଁ ତାର ପୂର୍ଣ୍ଣାଙ୍ଗ ଇୟତ୍ତା ?

ଅଚିହ୍ନାଠୁଁ ବରଂ ଭୟଙ୍କର
ଯେତେ ଚିହ୍ନା ମୁହଁ,
ଅନ୍ଧାରରେ ଭର୍ତ୍ତି ଦେହ ମନ
ଆଲୁଅର ମିଛି ମିଛିକାରେ
ଲାଗୁଥାଏ ସତେ ଦୀପ୍ତିମୟ ।

ଶଠତାର ଶେଷ କାହିଁ
କେଉଁଠୁ ଆରମ୍ଭ କୁହ
ହେ ମଇତ୍ର !
ଶାନ୍ତି ଆଉ ପ୍ରୀତିର ସହର,
କେଉଁ ଘନ କୁହୁଡ଼ିରେ ଲୁଚିଯାଏ
ସ୍ନେହଭରା ରଚିର ନଗର ।
ତୁମେ ମୋର ସଖା, ସହୋଦର
ଏବଂ ଗୁରୁ ଜନ୍ମ ଜନ୍ମାନ୍ତର,
ଶାନ୍ତି ନୁହେଁ, ନୁହେଁ ମୁକ୍ତି
ଏତିକି ବିନତି
ସଂସାରର କୁଣ୍ଡଳିନୀ
କର ଉଜାଗର ।

***

ପ୍ରେମ କ'ଣ ପଣିକିଆ ଲେଖୁଥିବା
ଗୋଟେ ପୁରୁଣା ସିଲଟ,
ନା ଅଚିହ୍ନା ଅକ୍ଷରଙ୍କ ସମୁଦ୍ରକୁ
ଘେରିଥିବା ବହିର ମଲାଟ ?
ଯେଉଁ ପ୍ରେମ ମୈତ୍ରୀହୀନ
ଯେଉଁଠାରେ ଶାନ୍ତି ପ୍ରୀତି
ନିଉଛୁଣା ହେଉଥାନ୍ତି ବାରଦୁଆର,
କରୁଣାର ସ୍ଥାନ ନାହିଁ
ତ୍ୟାଗର ବି ଟିକେ ଦେଖାନାହିଁ
ସେ ପ୍ରେମକୁ କରେ ମୁହିଁ
ଦୂରରୁ ଜୁହାର ।

ଜୀବନ କେବଳ ନୁହେଁ
ଦୁଇ ନିଆଁ– ଅନ୍ତୁଡ଼ି ଓ ଜୁଇ
ଦୀର୍ଘ ଶୂନ୍ୟସ୍ଥାନ,
ପାର୍ଥୀବରୁ ଅପାର୍ଥୀବ ଯାଏଁ ତା'ର ଗତି
କେହି ନୁହେଁ କାହାର ଫେଡ଼ାଣ ।

ଅତୀତକୁ ଝୁରି ଝୁରି
ଆଗାମୀ ବଂଦନା କରି
କେହି କେବେ ଜୀଏଁ କି ଜୀବନ ?
କି ଜୀବନ ସିଏ
କଲବଲ ଯନ୍ତ୍ରଣାର
ଏକ ଶସ୍ତା ଏବଂ ଅପ୍ରଭାବୀ ବିଜ୍ଞାପନ ।

ସେ ଜୀବନ ଲୋଡ଼ାନାହିଁ
ଯାହା କେବେ ନିଜ ମୁଣ୍ଡେ
ମାରିନାହିଁ ଟେକା,
ସରଳ ଗଣିତ ପରି ବୁଝିବାରେ
ନାହିଁ ଅସୁବିଧା
ରଖିବାକୁ ହେବ ଖୋଲା
ଜୀବନ-ଝରକା ।

ଯନ୍ତ୍ରଣା ହିଁ କେଉଁ ଏକ
ଦୂରାନ୍ତର ଗାଁ
ଯେଉଁଠି ମଣିଷ ଜନ୍ମେ, ଜୀଏଁ
ଆଉ ମରେ
ତଥାପି ଭୁଲେନା କେବେ ତା'ର ନାଁ ।
ସେଇ ଗାଁ ଲୁଚିଥାଏ ଛାଇ ପରି
ମଣିଷ ଛାତିରେ
ଅଜର ଅମର ଏକ ଭାଇରସ୍ ସିଏ
ମରେନାହିଁ ଥଣ୍ଡା ଓ ତାତିରେ ।

ସିଏ କୃଷ୍ଣ
ମୁଁ ତା'ର ଚିର ସଖା
ମୁଁ ହିଁ ଅର୍ଜୁନ,
ଲାଖବିନ୍ଧା ପାଇଁ ଖୋଜୁଥାଏ
ଅହରହ ମାଛର ନୟନ ।

★★★

ମୁଁ ଜାଣେନା ହେ ଅନାମ
କେମିତିକା କୁରୁକ୍ଷେତ୍ର ଇଏ
ଯେଉଁଠାରେ ବଳ କଷାକଷି
ନିଜ ନିଜ ଆତ୍ମୀୟ ସୋଦର,
କିଏ ଏଠି ମିତ୍ରର ମୁଖାରେ ବସି
ଡାକୁଥାଏ ଖେଳିବାକୁ ଏ କପଟପାଶା
ଯେଉଁଠି ହାରିବ ମୋର ଭାଗ୍ୟ ନିରନ୍ତର।

ମୁଁ ଜାଣେନା ହେ ଅନାମ
ହାରିବା ନୁହେଁ ହାରିବା
ଅଥବା ଜିତିବା ନୁହେଁ ଜିତିବା
ଏଇ ଆମ ଦୁନିଆର ପଶାଖେଳେ,
ପ୍ରତିସ୍ପର୍ଦ୍ଧୀ ଅହରହ ସୂଚାଏ
କେଉଁଠାରେ ଲୁଚିଥିଲା ମୋ ନିକମାପଣ
କେଉଁଠାରେ ତୁଚ୍ଛା ଅହଂକାର
ନିଜ ସୀମା ଲଂଘି ଭିଡ଼ିଥିଲା ଅଣ୍ଟା
କରିବାକୁ ଆଉ ଏକ ରଣ।

ମୁଁ ଜାଣେନା ହେ ଅନାମ
କେବେଠାରୁ ଏ ଧରାରେ
ଜନ୍ମ ହେଲେ ରାଗ, ଦ୍ୱେଷ, ଘୃଣା, ଅହଂକାର,
ପ୍ରେମର ରଗ୍‌ଣ ତରବାରୀ କିଆଁ
ହେଇଯାଏ ବଙ୍କା
ଜୁଝିଲା ବେଳକୁ କିଆଁ ଏତେ ସେ ନାଚାର !
ଏ ନଗ୍ରର ସବୁଲୋକେ ଜଣେ ଜଣେ
ସେମାନଙ୍କ ବିନୟୀ ପରଜା।
ଯଦିଓ ବାହୁନୁଥାନ୍ତି ସାରାରାତି
ସାରାଦିନ କହୁଥାନ୍ତି ସଭା ସମିତିରେ
ପ୍ରେମ ହିଁ ପରମ ଗତି
ପ୍ରେମ ଆମ ଭୂଲୋକର ରାଜା।

ମୁଁ ଜାଣେନା ହେ ଅନାମ
ସଂସାରର ହୃଦ୍‌ସ୍ପନ୍ଦନ
ଛୁକ୍ ଛୁକ୍ ରେଳଗାଡ଼ି ପରି ?
ଅଥବା ଶୂନ୍ୟ ଆଉ ମହାଶୂନ୍ୟ
ସମୁଦ୍ରରେ ଚୁପ୍‌ଚାପ୍ ଚାଲୁଥିବା ତରୀ ।
ଏବେ ଖାଲି ଗୋଟିଏ ପ୍ରାର୍ଥନା
ଏ ଅନ୍ଧାରୁ ମୁକ୍ତିଦିଅ
ପ୍ରେମ ଦିଅ ପ୍ରତାରଣା ଦିଅ
ଦିଅ ଯେତେ ଅଜଣା ଲାଞ୍ଛନା
ଅବାଞ୍ଛିତ ସବୁ ପ୍ରବଞ୍ଚନା
ହେଲେ କେବେ ଲିଭାଅନି
ଦୟାକରି କରୁଣାର ଆଲୋକ-ମୂର୍ଚ୍ଛନା !

***

ହେ ଅନାମ
କୁହ ମୋତେ ବୁଝାଇ
ମୁଁ ଜାଣିଛି ମାପି
ମଣିଷର ବୟସ, ଆୟୁଷ ।
କେମିତି ମାପିବି କହ
ଆତ୍ମାର ଆୟୁଷ
କେଉଁଠୁ ସେ ଆସେ ଏଇ
ଦେହ ଦେଉଳକୁ
ଏବଂ ଫେରିଯାଏ ଭାଙ୍ଗିଲେ ମନ୍ଦିର !
କୁଆଡ଼େ ସେ ଯାଏ
କେଉଁଠୁ ଆସିଲା
କା' ପାଖରେ ଅଛି ତା'ର
ଆଧାର କାର୍ଡ଼ ଅବା ଭୋଟର ଆଇଡି
କେଉଁଠି ରଖି ଆମେ
ଆସିଅଛୁ ବହୁଦୂରେ ଛାଡ଼ି ?
ସବୁ ଆତ୍ମା ଯଦି ଏକ
ତେବେ କିଆଁ ଅଲଗା କରୁ

ପୁରୁଷ ଓ ନାରୀ
ଭାଟ ଓ ଭିକାରୀ
ରାଜା ଓ ରଙ୍କ
ଭକ୍ତ ଅବା ଖଣ୍ଡ
ହିନ୍ଦୁ, ଅଣହିନ୍ଦୁ
ଚନ୍ଦ୍ର ଅବା ବିନ୍ଦୁ
ଦେହ ଗଲେ କୁଆଡ଼େ ସେ ଯାଏ ?
ଖାଏ ଅବା ଉପାସ ବି ରହେ ?

ଏ ସଂସାରେ ଯେଉଁମାନେ
ମୋର ପ୍ରିୟଜନ
ସେମାନେ କି ଆର ଜନ୍ମେ
ସେ ସମ୍ପର୍କ ରଖିବାକୁ ଅତୁଟ
ହୁଅନ୍ତି ଭାଜନ ?
ପରଜନ୍ମେ କିଏ ଭେଟେ
ନିଜ ପିତା-ମାତା-ଭଗ୍ନି ସହୋଦର
ଅଥବା ସନ୍ତାନ ସନ୍ତତି ଆଉ
ଅବନ୍ଧୁ ପାମର ?
ଅଥବା ବଦଳିଯାଏ ରୂପ
ଓ ଭୂମିକା
କାହାସହ କାହାରି କେବେ
ହୁଏନାହିଁ ଦେଖା ?

ଜୀବନଟା ନୁହେଁ ଖାଲି
ସଫଳ ବା ବିଫଳ କାହାଣୀ
ଯାତ୍ରା ଇଏ ଅସରନ୍ତି
ପଥିକର ଚାରା କ'ଣ
ଚାଲୁଥିବ ଅହର୍ନିଶ
ଶୁଣି ଶୁଣି ଶୂନ୍ୟର ରାଗିଣି ।

***

ହେ ଅନାମ
ହେ ମାନସହଂସ,
କିଏ ତୋ'ର ପରିଜନ
କହ ତୁ ଏବେ ତୋ ସୃଷ୍ଟିର ବୟସ।
ହେ ମହାକାଳ
ତୁମେ ହିଁ ତୁମର ସୃଷ୍ଟି
ତୁମେ ପୁଣି ନିଜର ବିଲୟ
ଏମିତି ହିଁ ଚାଲିଅଛି।
ଚାଲୁଥିବ ଚିରକାଳ।
ଡେଣା ଏଠି ମାପୁଥାଏ ଅହରହ
ଆକାଶର ସୀମା,
ସ୍ୱପ୍ନ କ'ଣ ଖୋଜୁଥାଏ ସବୁକାଳେ
ନିଦ୍ରାର ଅକ୍ଷାଂଶ ଦ୍ରାଘିମା ?

***

ଆଜାନୁଲମ୍ବିତ ଦାଢ଼ୀ
ରଖିଦେଲେ କେହି କେବେ
ହୁଏ ନାହିଁ ଋଷି,
ଅବା ଖଦଡ଼ ପିନ୍ଧିଲେ
ହୁଏ ନାହିଁ ଗାନ୍ଧୀ,
ରୂପ ଆଉ ନାମ ପାଇଁ
ନିଜକୁ ଠକିବା ସାର
କିଆଁ ଏତେ ଫନ୍ଦି ?

କି କବି ଅବା ତୁମେ
କେଉଁପରି କଳାକାର ?
ଯଦି ନିଜ ସମୟକୁ
ସମୟର ସଂଶୟକୁ
ଭର୍ତ୍ତିକରି ନେଇ ନାହିଁ
କରି ଆପଣାର ?
ତୁମେ ହିଁ ସମୟର
ସର୍ବଶ୍ରେଷ୍ଠ ଚୋର।

ସ୍ୱପ୍ନ ମୋର ବସିଥାଏ ଅହରହ
ରାଜଗାଦୀ ପରେ
ଭୁଲିଯାଏ ଆଖପାଖ ଲୀଳା,
ଯିମିତି ଭୁଲିଯାଏ କୈଶୋରର
'କାଶିଆ'କୁ ଦିନେ ଏ 'କପିଳା'।

ହେ ଅନାମ ସର୍ବନାମ
ଛାଇ ପରି ତୁମ ପାଶେ ମୁଁଇ
ତୁମ ଛଡ଼ା ଏ ସଂସାର
ଏତେ ସବୁ ସଂରଚନା
ହେଲେ ମୂଲ୍ୟ କିଛି ନାହିଁ।

ନଈର ଅତଡ଼ା ପରି
ଅଚାନକ ଖସିପଡ଼େ
ଯେତେସବୁ ପ୍ରିୟ ମୂଲ୍ୟବୋଧ,
ଆତଙ୍କିତ ଦେଖଣାହାରୀଙ୍କ ପରି
ଆମେ ଯେତେ ରହିଛୁ ପାମର
ନିଜ ବିରୁଦ୍ଧରେ ନିଜେ ନେଇ ପ୍ରତିଶୋଧ

ଏଥକୁ ବା କି ଉପାୟ ଅଛି ?
ତରବାରୀ ଧାରରେ ପରା
ଲାଗିଛି କଳଙ୍କି,
କଲ୍‌କୀ ଅବତାର ପାଇଁ
ଆଉ ଲୋଡ଼ାନାହିଁ କିଛି।

***

ହେ ଅନାମ,
ଏ ସଂସାର କିଆଁ ଏତେ
ଠକ, ଚୋର, ଡକାୟତ, ଶଠ
ଆଉ ପାମରରେ ଭର୍ତ୍ତି ?
ସର୍ଜନାରେ ନିଶ୍ଚେ ରହିଅଛି
ମଣିଷର ଜନ୍ମକାଳୁ ତ୍ରୁଟି।

ସାରା ଜୀବନ ହିଁ କଟେ
ଖୋଜି ଖୋଜି ରୋଗର ନିଦାନ,
ସ୍ୱର୍ଗ ହିଁ ପାଲଟି ଯାଏ
କ୍ଷଣିକରେ ମହାଶମଶାନ।

ମୁଁ ରଚିଛି ଯା ନିଜ ଭିତରେ
ଆଉ ଏକ ନନ୍ଦନକାନନ
ଯିଏ ଦେଖେ ହୁଏ ଆଚମ୍ବିତ
ଅନ୍ଧ ପାଇଁ ଲୋଡ଼ା ନାହିଁ
ତୃତୀୟ ନୟନ।

ମୋ ବାଟରେ ଯେତେସବୁ
ଶୃଙ୍ଗ ଓ ପାହାଡ଼
ଯନ୍ତ୍ରଣାର ଯେତେ ମାଂସହାଡ଼
ଏ ସବୁ ତ ଜୀବନମାଳାର
ଗୋଟେ ଗୋଟେ ଫୁଲ,
ସେଇ ତ ତଉଲି ଥାଏ
ସଂସାରର ସବୁ ଭଲ ଭେଲ
ହାତଗୁଞ୍ଜି ଯାଚେ ମୋର ମୂଲ।

ମୋ ଲୋଭର ସୀମା ସରହଦ
କଳିବାର ଇଚ୍ଛା ଭିଏଁ ଯେତେକ ବିପଦ
ସର୍ଜନା ସମୁଦ୍ରର ଅତଳ ସେ ଭୂଇଁ,
ଯାହାକୁ ମୁଁ ଲୋଡୁଥାଏ
ଦେବା ପାଇଁ ଛୁଇଁ।
କେବେ ସିଏ ମୋ ଭିତରେ
କେବେ ପୁଣି ତା' ଭିତରେ ମୁଁ,
ଶୂନ୍ୟ ମୋର ବଡ଼ଦାଣ୍ଡ
ତା' ଭିତରେ ରଥ ମୋର ଚାଲେ ଘୁଁ ଘୁଁ।

***

ହେ ଅନାମ ଅଣଚାଷ
ମୋ ଆତ୍ମାର ବର୍ଣ୍ଣମାଳା
ଜୀବନର ଅଟ ସୂତ୍ରଧର,
ତୁମ ବିନା ଏ ସଂସାର
ସ୍ୱପ୍ନ ସବୁ ହୁଏ ନାରଖାର ।

କେବେ ତୁମେ ନଈକୂଳ
ସୁଲୁସୁଲୁ ବାଆ,
କେବେ ପୁଣି ବତାସର
ରାଗିଲା ଚେହେରା
ଉଜାଡ଼ଇ କ୍ଷଣିକରେ ମାୟା ।

ହେ ଅନାମ ଅନାଦି ପୁରୁଷ
ଇଏ କ'ଣ ତୁମ ଋତୁସ୍ରାବ
ରଚିବାକୁ ଆଉଏକ ବିଶ୍ୱର ଆୟୁଷ ?

ଏ ସହରେ ଯେତେସବୁ
ପୁରୁଷ ଓ ନାରୀ,
ରଜା ମହାରାଜା,
ଭାଟ ଓ ଭିକାରୀ
ତୁମ ଜାଲେ ଦେଇଛନ୍ତି ଧରା,
ଅଥଚ ତୁମ ନୀରବତା
ଚୁପ୍‌ଚାପ୍ ଅଙ୍କକଷା
ବୁଝି ବି ଅବୁଝା ସଂସାରଟା ସାରା ।

ମୁଁ ତ ଅନ୍ଧ ତୁମେ ମୋର ବାଡ଼ି,
ତୁମରି ଇଙ୍ଗିତେ
ମୁଁ ଖେଳଇ ଖେଳୁଥିବି ଅହରହ
ସ୍ୱପ୍ନର ଲଉଡ଼ି ।

***

ହେ ଅନାମ
ଘେନ ମୋ ପ୍ରଣାମ
କୁହ ମୋତେ ମୋର ପରିଚୟ,
ମୁଁ ମୋ ଅତୀତର ସମାହାର ଏଯାବତ୍
ତେବେ ମୋର ଭବିଷ୍ୟତ
ଆଲୋକିତ ନା ଅନ୍ଧାରମୟ ?

ଏଇନେ ମୁଁ ଅତୀତ ଓ ଭବିଷ୍ୟତର
ଦୋଛକିରେ ହୋଇଅଛି ଠିଆ,
ଅନ୍ଧାରକୁ ପଛକରି ମୁଁ ବସିଛି
ହେଲେ ଆଲୋକ ତ କରୁନି କିମିଆ ?

ସମୟ ତ ସାପ-ସିଢ଼ି ଖେଳ
କେତେବେଳେ ଦିଏ ଗିଳି ଅବା ଦଂଶି
କେବେ ପୁଣି ସର୍କସର ଆକ୍ରୋବାଟ୍ସ ପରି
ଦୋଳିଖେଳେ ପ୍ରିୟ ମହାକାଳ ।

ସୂର୍ଯ୍ୟାସ୍ତରେ ଯେଉଁଠାରେ ବିନାସଂକୋଚରେ
ପହଂଚଇ ରାତି,
ଯେବେ କୁରୁକ୍ଷେତ୍ର ଯୁଦ୍ଧରେ ବି
ଆସିଯାଏ ଅସ୍ଥାୟୀ ବିରତି,
ସେ ରାତିର କେତେ ବା ଆୟୁଷ,
ସିଏ କ'ଣ ସଦା ବର୍ତ୍ତମାନ
ଜୀବନ ରାଜରାସ୍ତାର ହେଇପାରେ ଶେଷ ?

ହେ ଅନାମ
ନିଜକୁ ମୁଁ ଖୋଜି ବାହାରିଛି,
ବତାଇଲେ ବାଟ ମୋତେ
ହେବି ନାହିଁ ବାଟବଣା
ସେ ବାଟ ବି ଅନ୍ୟ ପାଇଁ

ହେବ ଏକ ଉଦାହରଣ
ଏପରି ଭାବିଛି ।

***

ସବୁ ଏଠି ଚୁପ୍‌ଚାପ୍ ଚାଲେ
ଦେହ ଆଉ ମନ ମିଶି
ପାଳୁଥାନ୍ତି ଉଷ୍ମ ନୀରବତା,
ଝରଣାର ବାଚାଳମି, ପକ୍ଷୀର କାକଳି
ଓ ଜହ୍ନର ଖିଲି ଖିଲି ହସ
କିଏ ସତେ ନେଇଛି ଚୋରାଇ
ବେଡ଼ି ପଡ଼ିଅଛି ପାଦେ
ଯା'କୁ କହୁ ଆମେ ମାନବତା ।

ଜିଭ କିନ୍ତୁ ମାନେନାହିଁ
ପିଥାଗୋରିଆନ୍ ନୀରବତାର
ଯେତେ ସବୁ ବୋଲ,
ଚାରିଆଡୁ ଆସୁଛି ପବନ
ଚୁପ୍‌ଚାପ୍ ଝର୍କା ଏବେ ଖୋଲ ।

ଜୀବନର ଅଙ୍କ କ'ଣ
ହେ ଅନାମ
ଖାଲି ଗୋଟେ ସରଳ ଜ୍ୟାମିତି ?
ଏତେ ସବୁ କରୁଣା ଓ ଅନୁକମ୍ପା
ଅନୁଭବ ଓ ଲାଞ୍ଛନା
ପ୍ରୀତି ଆଉ ପ୍ରତାରଣା ଫୁଲ
ଟାଙ୍ଗୁଡ଼ିରେ ରଖିବ କେମିତି ?

ଏ ଜୀବନ ନୁହେଁ ଗୋଟେ
ଅନନ୍ତକୁ ଲମ୍ବିଥିବା
ଛଅ ଧାଡ଼ି ଚୌଡ଼ା ରାଜପଥ,
ସାପ ପରି ଅଙ୍କାବଙ୍କା

ପାଦଚଲା ଆଉ ଉଠାଣି ଗଡ଼ାଣି
ଯେତେ ବାସ୍ତବ ଓ ସତ।

ଅସରନ୍ତି ଯାତ୍ରା ଇଏ
କୁଆଡ଼େ ଯାଉଛି କିଏ
କାହାକୁ ବି ତିଳେ ଜଣାନାହିଁ,
କୋଟି କୋଟି ପ୍ରଣାମ, ଅନାମ !
ଫିଠିଗଲେ ସେ ଅଡୁଆ ସୂତା
ଜୀବନର ଛନ୍ଦ ଆଉ କାହିଁ ?

***

ଚଉକିର ଲୋଭ ଏଠି
ମଣିଷ ପଣିଆକୁ କରେ ବାଟବଣା,
ଚାମଚା ହିଁ ପାଏ ଫୁଲମାଳ
(ହେଲେ) ସମୟ ସାଇତି ରଖେ ଜୋତାମାଳ
କେବେ ତାକୁ ପଡ଼େନାହିଁ ଜଣା।

ସମୁଦ୍ରର ଏ କୂଳରେ ସୂର୍ଯ୍ୟ ଉଠେ
ସେ କୂଳରେ ହୁଏନାହିଁ ତା'ର ଅସ୍ତ,
ସମୟ ତ ବାହାରିଛି ପାରିଧିରେ ତା'ର
ଜୀବନଟା ଖୁବ୍ ଅସ୍ତବ୍ୟସ୍ତ।

ସବୁ ଏଠି ଅଚିହ୍ନା ଓ ଦୋ ଦୋ ଚିହ୍ନା
ଭଲ ଆଉ ଭେଲ କିଏ
ପାରୁନାହୁଁ ଜାଣି,
ସ୍ୱପ୍ନ ସବୁ ଶୋଇଲେଣି ଫରୁଆ ଭିତରେ
ପ୍ରେମ, ମୈତ୍ରୀ କରୁଛି ଉଜାଣି।

ଜ୍ଞାନର ହାଟରେ ଏବେ ମେଲିଛି ପସରା
ଅଜ୍ଞାନୀଏ ପଢୁଛନ୍ତି ଗୀତା,

ଭାଙ୍ଗିଗଲେ ହାଟର ଗହଳି
ଚିହ୍ନି ହୁଏନାହିଁ କିଏ ନେତା
କିଏ ସେ ଜନତା ?

ଏମିତିକା ସମୟରେ
ତୁମେ ଏକା ସାଥି ହେ ଅନାମ
ଜୀବନକୁ ଜୀଇଁବାର ଚାବିକାଠି
ତୁମରି ପାଖରେ
ଯିଏ ଯେତେ କରୁଥାଉ
ମିଛରେ ଦୁର୍ନାମ !

***

କେଉଁଠାରେ ମୋ ସ୍ୱପ୍ନର ଦେଶ
ଲାଗେ ଯିଏ ଗୋଟେ ଜଳଛବି,
ଝୁରେନା ମୁଁ ଅତୀତକୁ
ମରେନା ମୁ ଭବିଷ୍ୟତ
ପଛେ ଧାଇଁ ଧାଇଁ
ବର୍ତ୍ତମାନ ହିଁ ମୋ ସର୍ବସ୍ୱ
ସିଏ ମୋ କବିତା,
ମୁଁ ତାହାର କବି ।

ସିଏ ଏକ ତ୍ରସ୍ତ ହରିଣ
ଯା'ର ପଛେ ପଛେ ଯାଉଁଥାଏ
ମୁଁ ଏକ ପାଗଳ ଶିକାରୀ,
ଗୋଟେ ପଟେ ଜଳେ ନିଆଁ
ଆରପଟେ ଜାଲ
ତଥାପି ଉଭାନ ହୁଏ ସେ ଅବିଳମ୍ବେ
ଖୋଜି ଖୋଜି ମୁଁ ନୟାନ୍ତ
ପାରେ ନାହିଁ ବୁଝି ତା ଚାତୁରୀ ।

ସ୍ୱପ୍ନର ଏ ବାଇଶି ପାହାଚ
ଗରୁଡ଼ ସ୍ତମ୍ଭ ପାଖରେ ମୁଁ ହୋଇଛି ଠିଆ,

ପାହାଚ ପରେ ପାହାଚ
ଡେଇଁ କଳ୍ପବଟ
ଛୁଇଁବାକୁ ହାତଠାରେ କରଇ କିମିଆ ।

କି ସ୍ୱପ୍ନ ଦେଖୁଚ ବସି ହେ ଅନାମ
ସ୍ନେହ, ଶ୍ରଦ୍ଧା, ମୈତ୍ରୀ ଆଉ ପ୍ରୀତି,
ସଂସାରର ସବୁ ଶକ୍ତି ଠୁଳ ଏବେ
ମୁକତିମଣ୍ଡପେ
ସେ ସ୍ୱପ୍ନକୁ କରିବାକୁ ସଫଳ ସାକାର
ଭୁଲିସବୁ ଶସ୍ତା ରାଜନୀତି ।

ସେ ସ୍ୱପ୍ନର ଭାଇରସ୍
ପଶିଗଲେ ମଗଜ ଭିତରେ,
ଯେତେ ସବୁ ଉଠୁଥିବା ଝଡ଼
ସାଇଟୋକାଇନ୍‌ର
ଥମିଯାଏ ନିମିଷକେ
ସୂର୍ଯ୍ୟ ବି ଶିହିରି ଉଠେ
ଅଜଣା ଶୀତରେ !

★★★

ହେ ଅନାମ, ତୁମେ ଜାଣ
ଏବେ ଖାଲି ଅର୍ବୁଦ ପାହାଡ଼,
ଖାଲଖମା, ନାଳ ଓ ନର୍ଦ୍ଦମା
ଲଙ୍ଘିଚାଲେ ଏକା ଏକା
ମଣିଷର ଭିଡ଼ ।

ଝୁଣ୍ଟିପଡ଼େ, ଉଠି ପୁଣି ଧାଏଁ
ବଢ଼ୁଥାଏ ରକ୍ତଚାପ, ନିଶ୍ୱାସର ଗତି,
ତୁମେ ଥରେ ହେଲେ ଆସି
ଦିଅନ୍ତ ଆଉଁସି,
ସେ ଆଲୋକ ଶିଖା
ନିଶ୍ଚେ ତାକୁ ଦିଅନ୍ତା ମୁକତି ।

ଡାକିଦେଲେ ଶରଧାରେ
ବେଳ ଅବେଳରେ
ଉଭାହୁଅ ବାଲିରଥ ପରେ,
ଅଥଚ ଏ ଆର୍ତ୍ତ ମଣିଷର
ବେଦନାର ଗାଥା
ଶୁଣନାହିଁ ଥରେ !

ଯେତେ ସବୁ ଯୁକ୍ତି ସିଦ୍ଧ ଆଉ
ସରଳ ଜ୍ୟାମିତି,
ଜାଣେ, ସେ ସବୁ ତ ତୁଚ୍ଛ ଏଠି
ଯେ ଅକଳନୀୟ
ତାକୁ ଅବା ମାପିବ କେମିତି ?

ଇଚ୍ଛା ହେଲେ ତୁମେ
ଆପେ ଆପେ ପଡ଼ିଯାଅ ଧରା,
ସେ ଇଚ୍ଛାର ପାହାଡ଼ ଦେଶରେ
ମୁଁ ଆମ୍ଭେ ଆମ୍ଭେମାନେ
ଜଣେ ଜଣେ ପୋଖତ ବିଚରା ।

***

ହେ ଅନାମ
ଜନ୍ମ ଆଉ ମୃତ୍ୟୁ ଯଦି ଦୁଇ ପାର୍ଶ୍ୱ
ଗୋଟିଏ ମୁଦ୍ରାର
ଏକୁଡ଼ିଶାଳରୁ ଜୁଇ ଯାଏ ଯାହା ହିଁ ଜୀବନ,
ଏତେ କିଆଁ ଲୀଳାଖେଳା, ସଂଘର୍ଷ
ଓ ପ୍ରତରଣା, ତର୍କ ଆଉ କୋଳାକୋଳି
ରାତି ଯାଏ ପାହି ହେଲେ ସରେନା ସପନ !

ଜୀବନଟା କ'ଣ ଗୋଟେ ବାଘବାଜି ଖେଳ ?
ଛିନ୍ନକରି ସମ୍ପର୍କକୁ ଭୂମି ସହ ପାଦଟିଏ
ଡେଉଁଥାଏ ହୋଇ ଟଳମଳ ?
କୈଶୋରର ଏଇ ଖେଳ

ବୋଧହୁଏ ଜୀବନର ଲମ୍ବା ରାସ୍ତାପରେ
ଗୋଟେ ମକ୍‌ଡ୍ରିଲ୍, କୌତୁକରେ
ଖେଲୁଥାଏ ମଣିଷ ଜାତିଟା
ସଂସାର ସହ ଯେମିତି ହେଇଅଛି ଡିଲ୍ ।

ସ୍ମୃତିର ଚାରା ବାଣ୍ଟେ ଅହରହ ସିଏ
ଯାହା ଧୀରେ ଧରେ ଫୁଲ ଆଉ ଫଳ,
ମିଛର ଚାବିନେନ୍ଥା ଧରି ଖୋଲୁଥାଏ
ପ୍ରେମର କୋଲପ
ଜାଣିଥାଏ ସବୁଥିରେ ହେବ ସେ ବିଫଳ ।

ଯିଏ କେବେ ଶୁଣିବାକୁ ଚାହିଁ ନାହିଁ
ବିଫଳତାର ସ୍ୱର୍ଦ୍ଧିତ ବେହେଲା,
ସେ କାହୁଁ ପହଁଚିବ ଆରକୂଳେ
ହାତଛନ୍ଦି ବସେ, ନ ମାରି ଆହୁଲା ?

ହେ ଅନାମ
ଅଜ୍ଞାନତା ମୋର ବଡ଼ ପୁଞ୍ଜି,
ଅଥଚ ରୋପିଛି ମୁହିଁ କାଳ କାଳ
ଜୀବନର ଟାଙ୍ଗରା ଭୂଇଁରେ
ବିଶ୍ୱାସର ମଞ୍ଜି ।

***

## ମନୁ ଦାଶଙ୍କ ସହିତ
## ‘ଅର୍ପିତା’ ପତ୍ରିକାର ସମ୍ପାଦକ
## ସୁବାସ ଷଡ଼ଙ୍ଗୀଙ୍କ ସାକ୍ଷାତକାର

**‘ଅନାମ କାବ୍ୟ ଆନ୍ଦୋଳନ’ରେ କେବେ ଯୋଗଦେଲେ, ସେ ସମ୍ପର୍କରେ କିଛି କହିବେ କି ?**

୧୯୭୪ ମସିହାରେ ମୁଁ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ବିଜ୍ଞାନର ଛାତ୍ର ଭାବେ ଇଣ୍ଟରମେଡିଏଟ୍‌ରେ ପଢୁଥାଏ । ଗାଁରୁ ଯାଇଥାଏ । ସହରର ଚଳଣି ଓ ଜୀବନଯାପନ ଆଦୌ ଭଲ ଲାଗୁ ନ ଥାଏ । କ୍ଲାସରେ ସାର୍‌ମାନଙ୍କ ଇଂରାଜି ଭାଷାରେ ପଢ଼ାଇବା ବି ମୋ ଲାଗି କାଳ ହେଲା । ପାଠପଢ଼ାରୁ ବୀରତ୍ୱର ସହ ପଛକୁ ଘୁଞ୍ଚି ଘୁଞ୍ଚି ଯାଉଥାଏ । ସମୟ କଟାଇବା ଲାଗି ହଷ୍ଟେଲ୍ ଲାଇବ୍ରେରୀରେ ଥାଏ ଅନେକ ରକମର ପତ୍ର ପତ୍ରିକା । ସେଇଠି ପ୍ରଥମେ ଜାଣିଲି ଅନାମ କବିତା ଆଉ କୁମାର ମହାନ୍ତିଙ୍କ ସମ୍ପର୍କରେ । ଦିନେ ଦୁଇଦିନ ଭିତରେ ଯାଇ ପହଞ୍ଚିଲି କୁମାର ମହାନ୍ତିଙ୍କ ଦଇତାପଡ଼ା ସାହି ଘରେ । ସେ ଅପରାହ୍ନଟି ସାରା ଜୀବନ ମନେ ରହିବେ ।

**ସେତେବେଳେ ପ୍ରାୟ ଛଅବର୍ଷ ହେଇ ସାରିଥିଲା ଅନାମ କାବ୍ୟ ଆନ୍ଦୋଳନକୁ । କେତେ ବୟସ ହେଇଥିଲା ଆପଣଙ୍କୁ ?**

ଅଠର ବର୍ଷ ।

**କିଏ ଏଇ କାବ୍ୟ ଆନ୍ଦୋଳନର ପୁରୋଧା ?**

୧୯୬୮ ସରସ୍ୱତୀ ପୂଜା ଦିନ ସ୍ୱର୍ଗଦ୍ୱାର ପାଖରେ ଭେଟ ହେଇଥିବା ସମସାମୟିକ ବନ୍ଧୁମାନେ ହିଁ ଆରମ୍ଭ କରିଥିଲେ ଏଇ କାବ୍ୟ ଆନ୍ଦୋଳନ । ସେମାନଙ୍କ ମଧ୍ୟରେ ଥିଲେ କୁମାର ମହାନ୍ତି, ଚିତ୍ତରଞ୍ଜନ ମିଶ୍ର, ନାରାୟଣ ପ୍ରସାଦ ସିଂ, ଉଦୟ ଦାସ ଓ ନୀଳମାଧବ ମିଶ୍ର । ମାତ୍ର ଏହାର ପୁରୋଧା ଥିଲେ କୁମାର ମହାନ୍ତି ଓ ତାଙ୍କର ଦିଗ୍‌ଦର୍ଶନ ହିଁ ଏ ଆନ୍ଦୋଳନକୁ ଆଗକୁ ନେଇଥିଲା ।

**ଅନ୍ୟମାନେ ?**

କିଛିଦିନ ସେମାନେ କୁମାର ମହାନ୍ତିଙ୍କ ସହ କବିତା ଲେଖିଲେ ଓ ପରେ ପରେ ଅନାମ ଆନ୍ଦୋଳନଠାରୁ ଦୂରେଇ ଗଲେ । ମୁଁ ୧୯୭୪ରେ ଆସିବା ବେଳେ ଅନେକେ ‘ଅନାମ କାବ୍ୟ ଆନ୍ଦୋଳନ’ ପ୍ରତି ଆକର୍ଷିତ ହେଇ ଆସିଥିଲେ ।

**ତେବେ ରହିପାରିଲେନି କାହିଁକି ?**

ଅନେକ କାରଣ ଅଛି । କିଛି କବିଙ୍କର ଟ୍ୟାଲେଣ୍ଟ ଓ ପ୍ୟାସନ୍‌ର ଅଭାବ ଥିଲା । ତା’ ସହିତ ନିଜ ସାହିତ୍ୟର ସମ୍ଭ୍ରାନ୍ତ ଅତୀତ ପ୍ରତି ଆଗ୍ରହ ନଥିଲା, ଆଉ କେତେକ ଅନାମକୁ ଏକ ସ୍ପ୍ରିଂ ବୋର୍ଡ଼ ଭାବେ ବ୍ୟବହାର କରିବାକୁ ଚାହୁଁଥିଲେ । ସେମାନେ ଘୋର ପରିଚୟ ସଙ୍କଟ ବ୍ୟାଧିରେ ପଡ଼ିଥିଲେ ।

**‘ଅନାମ କାବ୍ୟ ଆନ୍ଦୋଳନ’ର ପାଞ୍ଚଟି ଗୁରୁତ୍ୱପୂର୍ଣ୍ଣ ଦିଗ ସମ୍ପର୍କରେ କହିବେ କି ?**

ଶୁଣନ୍ତୁ ତା’ହେଲେ । ପ୍ରଥମ: ଅନାମ କବିତା ଶୀର୍ଷକରେ କେବଳ ବିନ୍ଦୁଟିଏ ରହିବ, ଅନ୍ୟ କୌଣସି ନାମକରଣ ରହିବନି । ଦୁଇ: କବିତା ଗାଁକୁ ଫେରିବ, ଅର୍ଥାତ୍ ସରଳ ଭାଷା ଓ ସୁର ଦେଇ ଗାଇ ପାରୁଥିବ। ତିନି: କବିତା ନିଜ ପରମ୍ପରା ଓ ସଂସ୍କୃତିର ଚେର ସହ ସମ୍ପର୍କ ଯୋଡ଼ିବ। ଚାରି: କବିତା ରାଷ୍ଟ୍ରର ଅବ୍ୟବସ୍ଥା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବ। କବିତା ସ୍ଲୋଗାନ୍-ଧର୍ମୀ ହେବନାହିଁ, ମାତ୍ର ମୂକକୁ ମୁଖର କରିବ ଏବଂ ପଙ୍ଗୁକୁ ଗିରି ଲଙ୍ଘନ ପାଇଁ ବିଶ୍ୱାସ ଜନ୍ମାଇବ। ପାଞ୍ଚ: ଅନାମମାନେ କୌଣସି ପୁରସ୍କାର ଗ୍ରହଣ କରିବେନି ।

**ସାହିତ୍ୟ ସଭାରେ ଅନାମମାନେ କାହାକୁ ସଭାପତି କରୁନଥିଲେ, ତାଙ୍କ ସଭାରେ ପ୍ରଭୁ ଜଗନ୍ନାଥ ହିଁ ସଭାପତିତ୍ୱ କରୁଥିଲେ ?**

ହଁ । ଠିକ୍ କଥା କହିଛନ୍ତି । ୧୯୭୭ ମସିହାରେ ପୁରୀ ଜିଲ୍ଲାର ନୟାହାଟ ହାଇସ୍କୁଲ୍‌ରେ ମୁଁ ‘ଅନାମଙ୍କ ଦଶମ ମେଳଣ’ର ଆୟୋଜନ କରିଥିଲି, ଯେଉଁଠାରେ ଓଡ଼ିଶାର ଅନେକ ବରିଷ୍ଠ କବି ଓ ଲେଖକ ଯୋଗ ଦେଇଥିଲେ। ସେମାନଙ୍କ ମଧ୍ୟରେ ଥିଲେ, ଚିତ୍ତରଞ୍ଜନ ଦାସ, ସୁରେନ୍ଦ୍ର ମହାନ୍ତି, ରାଜେନ୍ଦ୍ର କିଶୋର ପଣ୍ଡା, ମଧୁ ମହାନ୍ତି, କୁମାର ମହାନ୍ତି, ହରିହର ମିଶ୍ର, ଅଧ୍ୟାପକ ବିଶ୍ୱରଞ୍ଜନ, ଫନୀ ମହାନ୍ତି, ନେତ୍ରାନନ୍ଦ ସାମନ୍ତରାୟ ଆଦି ସତୁରୀ ଜଣ କବି ଓ ଲେଖକ। ସେଠି ଆୟୋଜିତ ସଭାରେ କେହି ସଭାପତି ନଥିଲେ କି ମଞ୍ଚାସୀନ ନଥିଲେ। ମଞ୍ଚ ତଳେ ଥିବା ଦରିରେ ସମସ୍ତେ ବସୁଥିଲେ ଓ ଯେ ଯାହା ପାଳିରେ ଯାଇ ମଞ୍ଚ ଉପରେ ବକ୍ତବ୍ୟ ରଖିବା ପରେ ପୁଣି ସଭାସ୍ଥଳକୁ ଫେରି ଆସୁଥିଲେ ।

ସାହିତ୍ୟ ଓ ସମାଜର ଅନ୍ୟାନ୍ୟ କ୍ଷେତ୍ରରେ ଥିବା କୁବ୍ୟବସ୍ଥାକୁ ଅନାମମାନେ ଅଙ୍ଗୁଳି ନିର୍ଦ୍ଦେଶ କରିବା ସହ ତା’ର ସଫଳ ପ୍ରୟୋଗ ମଧ୍ୟ କରିଥିଲେ। ଗୋପବନ୍ଧୁ ଦାସଙ୍କର ଗୋଟିଏ ଧାଡ଼ି ତାଙ୍କର ଏଇ ଚିନ୍ତା ଓ ଚେତନା ପାଇଁ ବ୍ରହ୍ମାସ୍ତ୍ର ଭାବେ ନିଆଯାଇଥିଲା: ଉତ୍କଳର ନେତା, ନିଜେ ନାରାୟଣ।’

**କେଉଁ ପତ୍ର ପତ୍ରିକାମାନ ସେତେବେଳେ ‘ଅନାମ କାବ୍ୟ ଆନ୍ଦୋଳନ’କୁ ସମର୍ଥନ କରୁଥିଲେ ?**

କଲିକତାରୁ ପ୍ରକାଶିତ ହେଉଥିବା ଓ ଓଡ଼ିଆ ସାହିତ୍ୟିକ ତଥା ପାଠକ ମହଲରେ ନିଜର ପରିଆରା ସୃଷ୍ଟି କରିଥିବା ‘ଆସନ୍ତାକାଲି’ ଓ ‘ନବରବି’ର ଅକୁଣ୍ଠ ସମର୍ଥନ ଥିଲା। ଏହା ଛଡ଼ା ଓଡ଼ିଶାରୁ ବାହାରୁଥିବା ସମ୍ଭ୍ରାନ୍ତ ପତ୍ରିକା ‘ମାନସ’ ଓ ଅନ୍ୟାନ୍ୟ ଅନେକ ପତ୍ରିକା ଏହି ଆନ୍ଦୋଳନକୁ ସମର୍ଥନ କରୁଥିଲେ। ଅନାମ କବିତା ଓ ଅନ୍ୟାନ୍ୟ ଲେଖା ମଧ୍ୟ ଛାପୁଥିଲେ।

**ଅନାମ କାବ୍ୟ ଆନ୍ଦୋଳନ'କୁ ଝଙ୍କାର ପତ୍ରିକା ବିରୋଧ କରୁଥିଲା କି ?**

ମୋ ଜାଣିବାରେ 'ଝଙ୍କାର' ପତ୍ରିକା ଅନାମ କବିତାକୁ ବିରୋଧ କରୁନଥିଲା, ସେପରି ଏକ ଭ୍ରମ ଧାରଣା ସୃଷ୍ଟି ହେଉଇଥିଲା ସାହିତ୍ୟିକମାନଙ୍କ ଗହଣରେ ।

**ତେବେ ଝଙ୍କାର ପତ୍ରିକାରେ 'ଅନାମ' କବିତା ପ୍ରକାଶ ପାଉ ନଥିଲା କାହିଁକି ?**

'ଝଙ୍କାର' ପତ୍ରିକାକୁ ମୁଁ କେବେ ଅନାମ କବିତା ପଠାଇନି । ତେଣୁ ଏପରି ଏକ ନିଷ୍କର୍ଷରେ ପହଞ୍ଚିବା ଠିକ୍ ହେବନି । ଅନେକ ବର୍ଷ ପରେ କୁମାର ମହାନ୍ତିଙ୍କର ଥରେ ଦୁଇଥର କବିତା ଛପାଇଥିବାର ମୁଁ ଦେଖିଛି । ମାତ୍ର ସେ କବିତାରେ ଶୀର୍ଷକ 'ବିନ୍ଦୁ' ନଥିଲା । ଏ କଥା ମୁଁ କୁମାର ମହାନ୍ତିଙ୍କୁ ପଚାରିଥିଲି । ସେ ଶୀର୍ଷକହୀନ କବିତା ପଠାଇଥିବା କଥା କହିଥିଲେ, ହେଲେ ଝଙ୍କାରର ସମ୍ପାଦକ କବିତାରୁ 'ବିନ୍ଦୁ' ହଟାଇ ଛାପିଦେଲେ ।

**ସେତେବେଳେ 'ଝଙ୍କାର' ପତ୍ରିକାରେ ଛପିଲେ ହିଁ ତମେ ଲେଖକ ହେଇପାରିବ, ଏମିତି ଧାରଣା ସୃଷ୍ଟି ହେଇଥିଲା ?**

ହଁ ଏପରି ଏକ ଭ୍ରମ ଧାରଣା ସୃଷ୍ଟି କରିଥିଲା 'ଝଙ୍କାର' । ୪୫ ବର୍ଷ ଭିତରେ ଝଙ୍କାରର କବିତା ସମ୍ପାଦନା ଦାୟୀତ୍ୱରେ ଜଣେ ବ୍ୟକ୍ତି ଏଯାକେ ବି ଅଛନ୍ତି । ମାତ୍ର ପତ୍ରିକାର ମାନ ରସାତଳକୁ ଚାଲିଯାଇଛି । କାହିଁକି ଏମିତି ହେଲା ? ଯେଉଁ ପତ୍ରିକା ଏକଦା ଲେଖକ ଓ କବି ସୃଷ୍ଟି କରୁଥିଲା ବୋଲି ଗର୍ବ କରୁଥିଲା, ସେଇ ଏକା ସମ୍ପାଦକ ଥାଇ ବି ଲେଖକମାନେ ପତ୍ରିକାଟିକୁ ଏବେ ହେୟଜ୍ଞାନ ମନେ କରୁଛନ୍ତି କାହିଁକି ? ଯେଉଁ ପତ୍ରିକା ସମ୍ଭ୍ରାନ୍ତ କବି ସୃଷ୍ଟି କରିପାରିଛି ବୋଲି ଗର୍ବ କରେ, ସେଇ ପତ୍ରିକାର ସମ୍ପାଦକ ଏବେ ଅନେକ ମିଡିଓକର୍ ଲେଖକଙ୍କ ଲେଖା ଛପାଇବାରେ ବ୍ୟସ୍ତ । ଏ କଥା ପତ୍ରିକାର ମାନଦଣ୍ଡ ଉପରେ ପ୍ରଶ୍ନବାଚୀ ସୃଷ୍ଟି କରୁନି କି ?

**ପୁରସ୍କାର ନେବେ ନାହିଁ ବୋଲି ଅନ୍ୟମାନେ ସେତେବେଳେ ଘୋଷଣା କରିଥିଲେ, ହେଲେ ଅନାମ କବିମାନେ ତ ପ୍ରଥମେ ଏ ଘୋଷଣାକୁ ଭାଙ୍ଗିଥିଲେ । ଏ କଥା କ'ଣ ମିଛ ?**

ଦେଖନ୍ତୁ, ଆପଣ ଠିକ୍ କହିଛନ୍ତି । ଅନାମମାନଙ୍କ ତରଫରୁ ଘୋଷଣା କରାଯାଇଥିଲା ଯେ ଓଡ଼ିଆ ସାହିତ୍ୟରେ 'ପୁରସ୍କାର' ହେଉଚି କର୍କଟ ଜୀବାଣୁ ସଦୃଶ । ପୁରସ୍କାର ରାଜନୀତିରୁ ନିଜକୁ ଦୂରେଇ ରଖିବା ପାଇଁ ସେ କେବଳ ଅନାମ କବି/ଲେଖକ ନୁହଁନ୍ତି; ସବୁ ବର୍ଗର ଲେଖକଙ୍କୁ ଆହ୍ୱାନ ଦେଇଥିଲା । ଏଠାରେ ମୁଁ ସୂଚାଇ ଦେବାକୁ ଚାହେଁ, ପୁରସ୍କାରକୁ ନେଇ ରାଜନୀତି, ଟଣାଓଟରା ଓ କାଦୁଅ ଫୋପଡ଼ା ଆଜିକାର ନୁହେଁ; ତାହା ସତୁରୀ ଦଶକ ଓ ଏହା ପୂର୍ବରୁ ବି ଥିଲା । ତା' ନ ହେଇଥିଲେ ମାୟାଧର ମାନସିଂହଙ୍କ ଭଳି କବିମାନେ ସାହିତ୍ୟ ଏକାଡେମି ପୁରସ୍କାର ପାଇବାରୁ ବଞ୍ଚିତ ହେଇ ନଥାନ୍ତେ ।

ଏ କଥା ଦୁଃଖଦ ନିଶ୍ଚୟ। 'ଅନାମ କାବ୍ୟ ଆନ୍ଦୋଳନ' ସହ ଜଡ଼ିତ ରହି ପୁରସ୍କାର ଗ୍ରହଣ କରିବା ଏକ ହାସ୍ୟାସ୍ପଦ ଓ ଲଜ୍ଜିତ ଘଟଣା।

**'ଅନାମ'ରେ ଥାଇ ବି କବି ହରିହର ମିଶ୍ର ତ ପୁଣି 'ଝଙ୍କାର' ବିଷୁବ ପୁରସ୍କାର ଗ୍ରହଣ କରିଥିଲେ !**

ଏଥିପାଇଁ ଅନାମ ଗୋଷ୍ଠୀ ସମାଲୋଚନାର ଶରବ୍ୟ ହେଇଥିଲା, ଘଟଣାଟି ଏବେ ବି ମନେଅଛି। 'ଝଙ୍କାର' ବିଷୁବ ପୁରସ୍କାର ବିତରଣର ପୂର୍ବ ସନ୍ଧ୍ୟାରେ ମଧୁ ମହାନ୍ତିଙ୍କ ଷ୍ଟେସନ ରୋଡ୍ ସ୍ଥିତ ବାସଭବନରେ, 'ଭାଗବତ ଟୁଙ୍ଗୀ' ପ୍ରକୋଷ୍ଠରେ କୁମାର ମହାନ୍ତି, ହରିହର ମିଶ୍ର ଓ ମୁଁ ଏକାଠି ହୋଇଥିଲୁ। ସାରା ରାତି ସେମାନଙ୍କ ଭିତରେ ଯୁକ୍ତିତର୍କ ଚାଲିଥାଏ। ମଧୁ ମହାନ୍ତି ସତର୍କ କରାଉ ଥା'ନ୍ତି ଯେ 'ଅନାମ କାବ୍ୟ ଆନ୍ଦୋଳନ'ର ଏଇ ବୈପ୍ଳବିକ ପଦ କ୍ଷେପକୁ ଭଣ୍ଡୁର କରିବା ପାଇଁ ହରେକୃଷ୍ଣ ମହତାବଙ୍କର ଏକ ସୁଚିନ୍ତିତ ଯୋଜନା ଥିଲା। ତେଣୁ ସେମାନେ ହରିହର ମିଶ୍ରଙ୍କୁ ସଫ୍ଟ ଟାର୍ଗେଟ କରିଥିଲେ। ସାରା ରାତିର ଆଲୋଚନା ବେଳେ ଏଇ ପୁରସ୍କାର ପ୍ରତ୍ୟାଖ୍ୟାନ କରିବେ ବୋଲି ହରି ବାବୁ ପ୍ରତିଶୃତି ଦେଇଥିଲେ ବି ପରଦିନ ଧୋବ ଫର୍ ଫର୍ ଧୋତି ଓ ଚମ୍ପାକଢ଼ିଆ ପଞ୍ଜାବୀ ପିନ୍ଧି ପୁରସ୍କାର ପାଇଁ ସଭାସ୍ଥଳକୁ ଯାଇଥିଲେ।

ଏଠି ସ୍ପଷ୍ଟ କହିରଖେ, ହରିହର ମିଶ୍ର ଜଣେ ପକ୍କା ଅନାମ ନଥିଲେ କେବେ ବି। ପାଖାପାଖି ୫ବର୍ଷ ହେଲା ସେ ଓଡ଼ିଶା ସାହିତ୍ୟ ଏକାଡେମୀର ମୁଣ୍ଡିଆଳ ଭାବେ ଭାବରତ (ଯେହେତୁ କାର୍ଯ୍ୟରତ ହେବାଭଳି କିଛି ନାହିଁ) ଅଛନ୍ତି। ନିଜକୁ 'ଅନାମ'ର ଥିଙ୍କ-ଟ୍ୟାଙ୍କ୍ ବୋଲି ଆତ୍ମପ୍ରଚାରରେ ମାତିଛନ୍ତି। ଅଥଚ 'ଅନାମ କାବ୍ୟ ଆନ୍ଦୋଳନ'କୁ ନେଇ ଶହେ ପୃଷ୍ଠାର ଚଟି ବହିଟେ 'ଓଡ଼ିଶା ସାହିତ୍ୟ ଏକାଡେମୀ' ଦ୍ୱାରା ଛାପିବା କଥା ତାଙ୍କ ମନକୁ ଆସି ପାରିଲାନି ! ଶୁଣିବାକୁ ମିଳୁଛି ନିଜର କିଛି ବହି ଇଂରାଜିରେ ଅନୁବାଦ କରେଇ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଛପେଇଛନ୍ତି। କେବଳ ସେତିକି ନୁହେଁ, କୁମାର ମହାନ୍ତିଙ୍କ ଆକସ୍ମିକ ବିୟୋଗର କିଛି ବର୍ଷ ପରେ ମୁଁ ଯେତେବେଳେ ଅନାମ କବିତାମାନକୁ ନେଇ ଏକ ସଙ୍କଳନ କରିବାକୁ ଚାହିଁଲି, ଏହା ନ କରିବାକୁ ସେ ମୋତେ ନିବର୍ତ୍ତାଇବା ଭଳି ଅପଚେଷ୍ଟା ମଧ୍ୟ କରିଥିଲେ।

'ଅନାମ' ହେବା ଲାଗି ଯେଉଁ ନିଷ୍ଠା ତଥା ହୃଦୟ ଦରକାର ତାହା ତାଙ୍କ ପାଖରେ କେବେ ବି ନଥିଲା। ସାହିତ୍ୟ ଦୁନିଆରେ ଅନେକ ସମୟରେ ନିଜର ନିଜତ୍ୱ ଓ ବିବେକକୁ ବିକ୍ରି କରିବା ଲାଗି କେତେକ ଅପେକ୍ଷା କରି ରହିଥାନ୍ତି ଯେମିତି ଚୂଡ଼ଙ୍ଗସାହିର ତତ୍କାଳୀନ ଗଣିକାଟି ଦୁଆରବନ୍ଧ ସାମ୍ନାରେ ଠିଆ ହେଇ ରହିଥାଏ।

**'ଅନାମ କାବ୍ୟ ଆନ୍ଦୋଳନ'ର ମୁଖ୍ୟ ପ୍ରବର୍ତ୍ତକ କୁମାର ମହାନ୍ତିଙ୍କର ତାଙ୍କ ସହ କିଭଳି ସମ୍ପର୍କ ଥିଲା ?**

୧୯୭୫ ମସିହାରୁ ମୁଁ ହରିହର ମିଶ୍ରଙ୍କୁ କୁମାର ମହାନ୍ତିଙ୍କ ଘରକୁ ପ୍ରତି ସପ୍ତାହରେ ଆସିବା ଦେଖିଛି। ସେତେବେଳେ ହରିବାବୁ ନୟାଗଡ଼ ବେସରକାରୀ

ମହାବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ଥା'ନ୍ତି। ଛୁଟିରେ ପୁରୀ ଆସନ୍ତି ନିଜ ଘରକୁ ପ୍ରତି ସପ୍ତାହରେ ଏବଂ ସେତିକି ବେଳେ ଆସନ୍ତି କୁମାର ମହାନ୍ତିଙ୍କ ଦଇତାପଡ଼ା ସାହି ଘରକୁ। କେବେ କେମିତି ତାଙ୍କ ସହ ଆସିଥାନ୍ତି ଗୌର ପଟ୍ଟନାୟକ ଓ ସୁଧୀର ଜେଠୀ। ଆଡ୍ଡା ତ ଜମେ, ମାତ୍ର ଅନେକ ସମୟରେ କୁମାର ମହାନ୍ତିଙ୍କ ସହ ହରିହର ମିଶ୍ରଙ୍କର ଯୁକ୍ତିତର୍କ ହୁଏ। ଲାଗେ ଯେମିତି ଦୁହେଁ ଝଗଡ଼ା କରୁଛନ୍ତି। ଦିନେ ମୁଁ କୁମାର ଭାଇଙ୍କୁ ପଚାରିଲି-ଯଦି ତୁମ ଆଦର୍ଶ ଓ ନୀତି ସହ ହରିବାବୁଙ୍କର ମେଳ ଖାଉନି, ତା'ହେଲେ ତୁମେ ତାଙ୍କୁ ଡାକୁଛ କାହିଁକି ? ଉତ୍ତରରେ କୁମାର ଭାଇ କହିଲେ: ମୁଁ ହରିକୁ ଡାକେନା, ସେ ମନକୁ ମନ ଆସେ ମାଗଣାରେ ବିଅର ପିଇବାକୁ। ଏଇଥିରୁ ଆପଣ ସବୁ ବୁଝିପାରିବେ।

**'ଅନାମ କାବ୍ୟ ଆନ୍ଦୋଳନ'କୁ ଅନେକ ଲୋକ ବିଭିନ୍ନ ସମୟରେ ଆସିଛନ୍ତି, ପୁଣି ଚାଲି ଯାଇଛନ୍ତି। ଏପରି କାହିଁକି ଘଟୁଥିଲା ?**

ଏ ପ୍ରସଙ୍ଗରେ ମୋର ୧୯୭୫ ମସିହାରେ ମେକ୍ସିକୋ ସହରରେ କୋଡ଼ିଏ ଜଣ ଯୁବ କବିଙ୍କୁ ନେଇ ଆରମ୍ଭ ହେଇଥିବା 'ଇନ୍‌ଫ୍ରାରିଏଲିଜିମ୍ ପୋଏଟିକ୍ ମୁଭ୍‌ମେଣ୍ଟ' (Infra-realism Poetic Movement) କଥା ମନେ ପଡୁଛି। ଜୀବନ ପ୍ରତି ସେମାନଙ୍କର ବ୍ୟକ୍ତିଗତ ଦୃଷ୍ଟିଭଙ୍ଗୀକୁ ନେଇ ମୁକ୍ତ ତଥା ବ୍ୟକ୍ତିଗତ କଥା ସେମାନେ ଲେଖୁଥିଲେ। ସମ୍ପୂର୍ଣ୍ଣ ଅପାରମ୍ପରିକ ଥିଲେ। ସେମାନଙ୍କ ମଧ୍ୟରେ ପ୍ରମୁଖ କବି ଥିଲେ ରବର୍ଟୋ ବୋଲାନୋ, ମାରିଓ ସାଣ୍ଟିଆଗୋ ପାପାସ୍କିରୋ, ଜୋସ୍ ଭିନ୍‌ସେଣ୍ଟି ଅନୟା, ରୁବେନ୍ ମେଦିନା ଏବଂ ଜୋସ୍ ରୋସାସ୍ ରିବେରୋ। ଏହି କାବ୍ୟ ଆନ୍ଦୋଳନର ପରମାୟୁ ଦୁଇ ବର୍ଷ ପାଇଁ ବଳବତ୍ତର ରହିଲା ଯେତେବେଳ ବୋଲାନୋ ଓ ପାପାସ୍କିରୋ ୧୯୭୭ ମେକ୍ସିକୋ ସହର ଛାଡ଼ି ୟୁରୋପ ଚାଲିଗଲେ। ଅବଶ୍ୟ ୧୯୭୯ରେ ପାପାସ୍କିରୋ ମେକ୍ସିକୋ ଫେରିଆସିବା ପରେ ଏଇ କାବ୍ୟ ଆନ୍ଦୋଳନକୁ ସେ ଜୀବିତ ରଖିଥିଲେ ୧୯୯୮ ପର୍ଯ୍ୟନ୍ତ, ତାଙ୍କ ମୃତ୍ୟୁ ହେବାଯାଏ। ଏବେ ବି ସେଇ କାବ୍ୟ ଆନ୍ଦୋଳନ ଠୁକୁ ଠୁକୁ ହେଇ ଚାଲୁଛି କିଛି ନୂଆ ଓ କିଛି ପୁରୁଣା କବିଙ୍କୁ ନେଇ।

ଏ କଥା କହିବାର ଉଦ୍ଦେଶ୍ୟ ହେଉଛି, ସାହିତ୍ୟ ଆନ୍ଦୋଳନ ଏଇମିତି ହେଇଥାଏ। କବି ଓ ଲେଖକମାନେ ଆସନ୍ତି ଓ ଯା'ନ୍ତି। ମାତ୍ର ସେମାନଙ୍କ ସୃଷ୍ଟି ଓ କାର୍ଯ୍ୟକଳାପ ସମସାମୟିକ ସାହିତ୍ୟିକ ପାଣିପାଗରେ ଲଗୁଚାପ ସୃଷ୍ଟିକରେ- ମହାବାତ୍ୟା ହୁଏ ଓ ବେଳେବେଳେ ଗତିପଥ ବଦଳିଯାଏ ଓ ମୌସୁମୀ ଦୁର୍ବଳ ବି ହୁଏ। ଏଥିରେ ଆଶ୍ଚର୍ଯ୍ୟ ହେବାରେ କିଛିନାହିଁ।

**'ଅନାମ' ଓ 'ନାମହୀନ' ଭିତରେ କିଛି ପ୍ରଭେଦ ଅଛି ?**

ବହୁତ ପ୍ରଭେଦ ଅଛି। ଅନେକ ଏ ଦୁହିଁଙ୍କ ଭିତରେ ଥିବା ପାଚେରୀକୁ ଭାଙ୍ଗିବାରେ ବିଫଳ ହେଇଥାନ୍ତି। 'ଅନାମ' ଏକ ଚେତନା, ଗୋଟେ ଜାତିର ସାଂସ୍କୃତିକ ମାନସିକତା ଓ ଆତ୍ମିକ ଭାବାବେଗ। 'ନାମହୀନ' ହେଉଛି ଅହଂର ଚାରିପଟେ ଢ଼ାଙ୍କି ରହିଥିବା ନିର୍ମୋକ,

ଅପାଂକ୍ତେୟ ବେଳାଭୂମିରେ ଠିଆ ହେଇ ଆମେ ଆଞ୍ଜୁଳାଏ ପାଣିକୁ ସମୁଦ୍ରଠାରୁ କିଛି କ୍ଷଣ ଅଲଗା କରିପାରୁ, ମାତ୍ର ଯେତେବେଳେ ସେଇ ଆଞ୍ଜୁଳାଏ ପାଣି ସମୁଦ୍ର ଗର୍ଭରେ ଲୀନ ହେଇଯାଏ, ତା'ର ସ୍ୱତନ୍ତ୍ର ସତ୍ତା ଖୋଜି ପାଇବା ଅସମ୍ଭବ। ସେତେବେଳକୁ ସେ 'ନାମ'ରୁ 'ନାମହୀନ' ହେଇ ଯାଇଥାଏ। 'ନାମହୀନ'ରୁ 'ଅନାମ' ଏକ ଦୀର୍ଘ ଯାତ୍ରା।

**'ଅନାମ କାବ୍ୟ ଆନ୍ଦୋଳନ'ର ଅୟମାରମ୍ଭ ବେଳେ ତା' ଭିତରେ ଏକ ଆଣ୍ଟି ଏଷ୍ଟାବ୍ଲିସ୍‌ମେଣ୍ଟର ସ୍ୱର ବେଶ୍ ବାରି ହେଇପଡୁଥିଲା। ସେ ସ୍ୱର ଥିଲା ବିଦ୍ରୋହର ସ୍ୱର। ସେପରି ବିଦ୍ରୋହର ପଦଧ୍ୱନି ଆଉ କାହା ପାଖରେ ଶୁଣା ଯାଇଥିଲା କି ଓଡ଼ିଆ କବିତାରେ ?**

ସେତେବେଳେ ଓଡ଼ିଶାରେ ତିନିଜଣ କବିଙ୍କର କବିତାରେ ବିଦ୍ରୋହର ସ୍ୱର ଶୁଣା ଯାଉଥିଲା। ପ୍ରଥମ ଜଣକ ହେଉଛନ୍ତି ବେଶ୍ ଲୋକପ୍ରିୟ ଓ ତୀର୍ଯ୍ୟକ ସ୍ୱର: ରବି ସିଂ। ତାଙ୍କ କବିତାରେ ନଜରୁଲ୍‌ଙ୍କ ଛାପ ତ ସ୍ପଷ୍ଟ ଥିଲା ଏବଂ ଅଗ୍ନିବର୍ଷା ପରି ଲାଗୁଥିଲା। କଟକରେ ଲେବର୍ କଲୋନିରେ ସେ ରହୁଥିଲେ। ବାଦାମବାଡ଼ିରେ କାହା ଉପରେ ବସ୍ ଚଢ଼ିଗଲେ ବି ତାଙ୍କ ହୃଦୟ ତରଳୁ ନଥିଲା। ମାତ୍ର ଲେନିନ୍‌ଗ୍ରାଡ୍ କିମ୍ବା ଭ୍ଲାଡିଭଷ୍ଟକରେ ଯଦି କାହାରି ପାଦରେ କଣ୍ଟା ଫୁଟିଯାଉଥିଲା, ରବି ସିଂଙ୍କ ଆଖିରୁ ରକ୍ତ ଝରୁଥିଲା। ଦ୍ୱିତୀୟ ବିଦ୍ରୋହୀ କବି ଥିଲେ: ବ୍ରଜନାଥ ରଥ, ରବୀନ୍ଦ୍ରନାଥ ଟାଗୋର୍‌ଙ୍କ ମାନବବାଦୀ ଚେତନାରେ ସଂକ୍ରମିତ ତାଙ୍କ କବିତା, ତାଙ୍କ ଭଳି ତାଙ୍କ କବିତା ବେଶ୍ ମୁଲାୟମ୍ ଓ ତୀବ୍ର କଳାତ୍ମକ। ତୃତୀୟ ବିଦ୍ରୋହୀ କବି: କୁମାର ମହାନ୍ତି। ତାଙ୍କ କବିତା ଆଧ୍ୟାତ୍ମିକତା ଓ ବିଦ୍ରୋହାତ୍ମକ ଅସହମତିର ଥିଲା ଏକ କକ୍‌ଟେଲ। ବେଶି ପ୍ରଭାବୀ ଢ଼ଙ୍ଗରେ ସେ ଉପସ୍ଥାପିତ କରି ପାରୁଥିଲେ ତାଙ୍କ କବିତା। ପାଠକକୁ ଆଉ ଏକ ଦୁନିଆରେ ପହଞ୍ଚାଇ ଦେଇ ପାରୁଥିଲେ ସେ।

ତାଙ୍କ କବିତାବୃତ୍ତିର ପ୍ରଭାବର ଗୋଟିଏ ଉଦାହରଣ ଦେବି: 'ପ୍ରଜାତନ୍ତ୍ର ପ୍ରଚାର ସମିତି' ତରଫରୁ ଆୟୋଜିତ କବିତା ପାଠୋତ୍ସବରେ କୁମାର ମହାନ୍ତି ଓ ରବି ସିଂ କବିତା ପଢ଼ିବାକୁ ଆସିଥାନ୍ତି। ସମସାମୟିକ ଅନେକ ଭଲ କବି ବି ଥାନ୍ତି କବିତା ପଢ଼ିବା ପାଇଁ। ହଲ୍‌ଟି ଶ୍ରୋତାରେ ଖଚାଖଚ ଭର୍ତ୍ତି। ମୋର ସୌଭାଗ୍ୟ ମୁଁ କବିତା ପାଠୋତ୍ସବରେ ଜଣେ ଶ୍ରୋତା ଥିଲି। ରବି ସିଂ ଓ କୁମାର ମହାନ୍ତି କବିତା ଗାଇ ସାରିବା ପରେ ହଲ୍‌ଟି ହଠାତ୍ ଜନଶୂନ୍ୟ ହେଇଗଲା ଯେମିତି ଭଲ ପ୍ରଦର୍ଶନ କରୁଥିବା ଗୋଟେ ଶିଳ୍ପ ସଂସ୍ଥାର ସେୟାର ହଠାତ୍ ବଜାର୍‌ରେ କ୍ରାସ୍ କରିଯାଏ। ଏ ଦୁଇଜଣ ପାଠକମାନଙ୍କୁ ସ୍ତମ୍ଭୀଭୂତ କରି ରଖିବାରେ ଥିଲେ ଓସ୍ତାଦ୍।

**ପୁରୀରେ କୁମାର ମହାନ୍ତିଙ୍କ ଘର ଗୋଟେ ସାଂସ୍କୃତିକ ପ୍ରାଣକେନ୍ଦ୍ର ଥିଲା ବୋଲି ମୁଁ ଶୁଣିଛି। ଆପଣଙ୍କର କ'ଣ ଧାରଣା ?**

ବର୍ଷକ ବାରମାସ ଦଇତାପଡ଼ା ସାହିର ସେଇ ରାସ୍ତା ସାମ୍ନା ଡ୍ରଇଂ ରୁମ୍‌ରେ କବିତା ଚର୍ଚ୍ଚା

ଚାଲୁଥିଲା। ଅନେକ ସାହିତ୍ୟିକଙ୍କୁ ମୁଁ ସେଇଠି ହିଁ ଭେଟିଛି ଯେଉଁମାନେ ସେ ସମୟରେ ବେଶ୍ ସକ୍ରିୟ ଥିଲେ ସାହିତ୍ୟ ସମ୍ପାଦନା ଓ କଳା କ୍ଷେତ୍ରରେ: ଚିତ୍ତରଞ୍ଜନ ଦାସ, ବ୍ରଜନାଥ ରଥ, ପ୍ରସନ୍ନ କୁମାର ପାଟ୍ଟଶାଣୀ, ଗୁରୁ ପଙ୍କଜ ଚରଣ ଦାସ, କସ୍ତୁରୀ ଚରଣ ଦାସ, ମିହିର କୁମାର ମହାନ୍ତି, କଳ୍ପନା କୁମାର ଦେବୀ ଓ ଶ୍ରୀକାନ୍ତ ପଣ୍ଡା ଇତ୍ୟାଦି। ଦିନ ସାରା ଚା' ପିଆ ଓ କବିତା, ଓଡ଼ିଆ ସଂସ୍କୃତିକୁ ନେଇ ଚିନ୍ତନ ଓ ମନ୍ଥନ। ବେଳେ ବେଳେ ଲାଗୁଥିଲା ସାହିତ୍ୟର ଅଷ୍ଟପ୍ରହରୀ ଚାଲିଛି।

**ଅନାମ ଯେଉଁ ଆଭିମୁଖ୍ୟ ନେଇ ଜନ୍ମ ହେଇଥିଲା, ପରେ ପରେ ସେ ଆଭିମୁଖ୍ୟ ବଦଳିଛି କି ?**

ହଁ ବଦଳିଛି। ତେବେ କେଉଁ ପରିସ୍ଥିତିରେ ସେ ଆଭିମୁଖ୍ୟ ପରିବର୍ତ୍ତନ ଆସିଛି ଏହା ସମାଲୋଚକମାନେ ବିଚାର କରିବା ଆବଶ୍ୟକ।

**'ଅନାମ କାବ୍ୟ ଆନ୍ଦୋଳନ'ରେ ସାମିଲ୍ ହେଇ ଆପଣ କ'ଣ ପାଇଛନ୍ତି ଆଉ ହରେଇଛନ୍ତି ?**

କିଛି ପାଇବାକୁ ହେଲେ କିଛି ତ ହରାଇବାକୁ ପଡ଼େ। 'ଅନାମ' ମୋର ସାହିତ୍ୟ ପିପାସାକୁ ତୀବ୍ର ଓ ମହତ୍ତର କରିବାରେ ବେଶ୍ ସହାୟକ ହୋଇଛି। ନିଜ ମାଟିର ଚେର ସନ୍ଧାନୀ ହେବାକୁ, ମୋର କଳ୍ପନାରେ ଡେଣା ହେଇ ବିଶ୍ୱ ସାହିତ୍ୟକୁ ନିରୀକ୍ଷଣ କରିବାର ଅଭୀପ୍ସାକୁ ସାହାଯ୍ୟ କରିଛି 'ଅନାମ'। 'ଅନାମ'କୁ ଆସି ନଥିଲେ, ମୁଁ ହୁଏତ ସାହିତ୍ୟ ଭୂଇଁରେ ବିଚରଣ ନ କରି ଆଉ କେଉଁ ଅଞ୍ଚଳରେ ଘୁରି ବୁଲୁଥାନ୍ତି। ଆତ୍ମାବଲୋକନ କରିବାରେ ବିଫଳ ହେଇଥା'ନ୍ତି।

ହରାଇବା କଥା ପଚାରୁଛନ୍ତି ? ଅତଳ ସମୁଦ୍ର ଗର୍ଭରୁ ମୁକ୍ତା ସନ୍ଧାନରେ ବାହାରିଥିବା ବୁଡ଼ାଳିଟି କ'ଣ ପାଣିର ଶୀତଳତାକୁ କେବେ ଡରେ ?

**ଧନ୍ୟବାଦ।**



'ଅନାମ କାବ୍ୟ ଆନ୍ଦୋଳନ'ରୁ ନିଜ ସାହିତ୍ୟିକ ଯାତ୍ରା ଆରମ୍ଭ କରିଥିବା ମନୁ ଦାଶ (୧୯୫୬) ଜଣେ ଦ୍ୱି-ଭାଷିକ (ଓଡ଼ିଆ ଓ ଇଂରାଜୀ) କବି, ଅନୁବାଦକ, ସଂପାଦକ, ସାଂସ୍କୃତିକ ସଂଗଠକ ଓ ପ୍ରକାଶକ। ଶ୍ରୀ ଦାଶଙ୍କ କବିତା ମାଲାୟଲାମ୍, କନ୍ନଡ଼, ଆସାମି, ଉର୍ଦ୍ଦୁ, ହିନ୍ଦୀ, ଗୁଜରାଟି ଆଦି ଭାରତୀୟ ଭାଷା ଓ ରୁଷିଆ, ସ୍ଲୋଭିନି, ଉଜ୍‌ବେକ ଆଦି ଭାଷାରେ ଅନୁଦିତ, ପ୍ରକାଶିତ ଓ ପ୍ରଶଂସିତ ହୋଇଛି।

ସଂପ୍ରତି ଲେଖକ ଭୁବନେଶ୍ୱରରେ ସ୍ୱପ୍ନ ଦେଖି ଦେଖି ଏକାନ୍ତରେ କାଳାତିପାତ କରୁଛନ୍ତି।

www.dhaulibooks.com


ISBN 9789389382341

₹ 195.


DHAULI BOOKS